ସଚିତ୍ର

# ଟିକି ମହାଭାରତ

ଶ୍ରୀ ଗୋଦାବରୀଶ ମହାପାତ୍ର ପ୍ରଣୀତ

# TIKI MAHABHARATA

By

Godavarish Mahapatra

ଚତୁର୍ଥ ସଂସ୍କରଣ

Published By
THE STUDENTS' STORE
BERHAMPUR : CUTTACK : SAMBALPUR
1948



ମୂଲ୍ୟ ଚଉଦ ଅଣା

# ଟିକି ମହାଭାରତ

## ପୂର୍ବ କଥା

ଆଜିକି କେତେ ହଜାର ବର୍ଷ ହୋଇ ଗଲାଣି, ଆମ ଦେଶର ଉତ୍ତରକୁ ଗଙ୍ଗା ନଈ କୂଳରେ ହସ୍ତିନା ବୋଲି ଗୋଟିଏ ଅତି ସୁନ୍ଦର ସହର ଥିଲା । ସେଠାରେ ଦୁଷ୍ମନ୍ତ ବୋଲି ଜଣେ ଭାରି ବଡ଼ ରଜା ଥାନ୍ତି । ଥରେ ସେ ବଣରେ ପାରିଧି କରି ବୁଲି ବୁଲି ଶକୁନ୍ତଳା ବୋଲି ଗୋଟିଏ ଋଷି ଝିଅଙ୍କୁ ଦେଖିଲେ । ସେ ଝିଅଟି ବଡ଼ ସୁନ୍ଦର । ରଜା ତାଙ୍କୁ ବିଭା ହେଲେ । ତାଙ୍କର ଗୋଟିଏ ପୁଅ ହେଲା । ସେଇ ପୁଅଟିର ନାଁ ଭରତ ।

ବଡ଼ ହେଲାରୁ ଭରତ ରଜା ହେଲେ । ତାଙ୍କ ପରି ପାରିବାର ରଜା ଆମ ଏ ମୁଲକରେ ଆଉ କିଏ ନ ଥିଲେ । ସେ ଅନେକ ଦେଶ ଜିଣିଲେ, ମହାରାଜା ବୋଲାଇଲେ । ତାଙ୍କ ନାଁ ଚାରିଆଡ଼େ ବାଜିଲା । ସେଇ ଦିନୁ ତାଙ୍କ ନାଁରୁ ଆମ ଦେଶ ନାଁ ଭାରତବର୍ଷ ହୋଇଛି । ତାଙ୍କର କୁଳରେ କୁରୁ ବୋଲି ଜଣେ ରଜା ବାହାରିଲେ । ସେ ଭାରି ନାଁ ଥିବାରୁ ତାଙ୍କ କୁଳ କୁରୁକୁଳ ବୋଲି ଖ୍ୟାତ ହେଲା ।

ତାଙ୍କର କୁଳ ଲୋକଙ୍କ କଥା ଲେଖା ହୋଇ ଯେଉଁ ପୋଥି ହୋଇଛି ତା ନାଁ ମହାଭାରତ ।

---

## ଦେବତାମାନେ ଶାପ ପାଇଲେ

ଦିନେ ସ୍ୱର୍ଗରେ ଦେବତାମାନେ ସଭା କରିଥିଲେ । ଭାରି ଉତ୍ସବ ଲାଗିଥିଲା । ସେ ସଭାକୁ ମହାଭିଷ ବୋଲି ମର୍ତ୍ତ୍ୟପୁରର ଜଣେ ଋଷି ଡକରା ପାଇ ଯାଇଥିଲେ । ସେ ଦିନ ଗଙ୍ଗାଦେବୀ ଅତି ସୁନ୍ଦର ବେଶ ଟିଏ ଧରି ସଭାରେ ବସିଥାନ୍ତି । ମହାଭିଷ ତାଙ୍କୁ ବାଆ ହେବାକୁ ବଡ଼ଡ଼ର ଝୁରି ହେଲେ । ଦେବତାମାନେ ତ ସବୁର ମନ କଥା ଜାଣି ପାରନ୍ତି, ମହାଭିଷଙ୍କ ମନ କଥା ତାଙ୍କୁ କିଛି ଭଲ ଲାଗିଲା ନାହିଁ । ସେମାନେ ଡରିଯାଇ ସେ ଦୁହିଁଙ୍କି ଶାପ ଦେଲେ, "ତୁମେ ମର୍ତ୍ତ୍ୟକୁ ଯାଇ ମନୁଷ୍ୟ ହୁଅ ।" ଏହି ଶାପରେ ମହାଭିଷ ଋଷି କୁରୁକୁଳର ରଜା ପ୍ରତୀପଙ୍କର ପୁଅ ହୋଇ ଜନ୍ମ ହେଲେ । ତାଙ୍କ ନାଁ ଶାନ୍ତନୁ ହେଲା ।

ଏହି ସମୟରେ ଆଉ ଆଠ ଜଣ ଦେବତା ଶାପ ପାଇଲେ । ଏ ଆଠ ଜଣ ଆଠ ଭାଇ । ଦିନେ ସମସ୍ତେ ସାଙ୍ଗ ହୋଇ ବୁଲି ବୁଲି ବଶିଷ୍ଠ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ । ମୁନି ସେଦିନ କୁଆଡ଼େ ଯାଇଥିଲେ । ଏମାନେ ନନ୍ଦିନୀ ବୋଲି ତାଙ୍କର ଗୋଟିଏ ଗାଈକୁ ଚୋରାଇ ନେଇ ଆସିଲେ । ବଶିଷ୍ଠ ପଛେ ଆସି ସବୁ କଥା ଜାଣି ପାରିଲେ । ରାଗରେ ତହୁଁ ସେ ଆଠ ଭାଇଙ୍କୁ ଶାପ ଦେଲେ, "ତୁମେ ଚୋରି କରି ପାପ କରିଛ, ତେଣୁ ସଂସାରରେ ମନୁଷ୍ୟ ହୋଇ ରହିବ ।"

ଏ ଶାପ ପାଇ ଆଠ ଦେବତାଙ୍କ ଦେହ ଥରିଲା । ଏଥିରୁ ଉଦ୍ଧାର ପାଇବା ପାଇଁ ସେମାନେ ମୁନିଙ୍କ ପାଖେ ଆସି କାକୁତିମିନତି

ହୋଇ ପ୍ରାର୍ଥନା କଲେ । ତାଙ୍କ ବିକଳ ଦେଖି ମୁନିଙ୍କର ଦୟା ହେଲା । କହିଲେ, "ମୋ କଥାତ ଆଉ ବୃଥା ଯିବ ନାହିଁ । ତୁମ ଭିତରେ ଦ୍ୟୁ ବୋଲି ଯେ ଅଛନ୍ତି ସେ ବଡ଼ ଦୋଷୀ । ସାତ ଭାଇ ନର ଜନ୍ମ ପାଇବା କ୍ଷଣି ସ୍ୱର୍ଗକୁ ଫେରି ଯିବ । ମାତ୍ର ମନୁଷ୍ୟମାନେ ଯେତେ ଦିନ ଜୀଅଁନ୍ତି ଦ୍ୟୁ ସେତେ ଦିନ ସଂସାର ଭୋଗ କରି ରହିବେ ।"

ଆଠ ଭାଇ ଯାକ ସେଠୁ ଗଙ୍ଗା ଦେବୀଙ୍କ ପାଖକୁ ଗଲେ । ଗଙ୍ଗା ତାଙ୍କ ଦୁଃଖ ଶୁଣି କହିଲେ, "କୁରୁକୁଳର ପ୍ରତାପ ରଜାଙ୍କ ପୁଅ ଶାନ୍ତନୁଙ୍କୁ ମୁଁ ବିଭା ହେବି । ତୁମେମାନେ ମୋ ପୁଅ ହେବ ।"

ଏହା ଶୁଣି ବସୁ ଦେବତାମାନେ ଖୁସି ହୋଇ ଫେରିଗଲେ ।

ଇମିତ କେତେ ଦିନ ଗଲା । ମହାଭିଷ ଋଷି ତ ଶାନ୍ତନୁ ହୋଇ କୁରୁକୁଳରେ ଜନ୍ମ ହୋଇଥାନ୍ତି, ସେ ଦିନେ ଏକୁଟିଆ ବୁଲି ବୁଲି ଗଙ୍ଗାଦେବୀ ତାଙ୍କ ଆଗେ ଦେଖା ଦେଲେ । ତାଙ୍କ ରୂପ ଦେଖି ମହାରଜାଙ୍କ ଆଖି ଝଲସି ଗଲା । ଭାବିଲେ, "ଯାଙ୍କୁ ବିଭା ହେଲେ ମୁଁ କେଡ଼େ ସୁଖରେ ନ ରହନ୍ତି !" ଏ କଥା ବିଚାରି ସେ ତାଙ୍କ ପାଖକୁ ଗଲେ । ପଚାରିଲେ, "ତୁମେ କିଏ ? ଏ ବଣରେ ଏକୁଟିଆ କାହିଁ ବୁଲୁଛ ? ଚାଲ ଆମର ରାଣୀ ହେବ, ସୁଖରେ ନଅରରେ ରହିବ ।"

ଗଙ୍ଗା ଦେବୀ ଏହା ଶୁଣି କହିଲେ, "ହଉ, ଯିବି, ମାତ୍ର ମୋର ଗୋଟିଏ କଥା ରଖିଲେ ଯିବି । ମୁଁ ଯାହା କରୁଥିବି, ମତେ ଯେବେ ତୁମେ କିଛି ନ କହିବ, ତେବେ ଯିବି । କିନ୍ତୁ ଯେବେ କହିବ, ପାଖରୁ ପଳାଇବି ।" ରଜା ଏଥିକି ମଙ୍ଗିଲେ । ଦୁହେଁ ରଥରେ ବସି ନଅରକୁ ଆସିଲେ । ନୂଆ ରାଣୀଙ୍କି ଧରି ରଜା ସୁଖରେ ରହିଲେ ।

ଏତେ ଧନକେ ମହାଭିଷ ଆଉ ଗଙ୍ଗା ଦେବୀଙ୍କର ଶାପ ଫଳିଲା ।

---

## ଦେବବ୍ରତଙ୍କ ନାଁ ଭୀଷ୍ମ ହେଲା

ଶାନ୍ତନୁଙ୍କର ଗୋଟିଏ ପୁଅ ହେଲା । ପୁଅଟି ଜନ୍ମ ହେଲାକ୍ଷଣି ରାଣୀ ତାଙ୍କୁ ଗଙ୍ଗାରେ ନେଇ ପକାଇ ଦେଲେ । ରାଣୀ ରାଗରେ ପଳାଇବେ ବୋଲି ରଜା ତାଙ୍କୁ ଭୟରେ କିଛି କହିଲେ ନାହିଁ । ଇମିତି ଗୋଟି ଗୋଟି କରି ରାଣୀ ସାତ ପୁଅ ମାରିଲେ । ବାପ ହେବ ଏଥିରେ ପଦେହେ କେତେଦିନ? ଯେତେବେଳେ ଆଉ ପୁଅଟିଏ ହେଲା, ତାକୁ ନ ମାରିବା ପାଇଁ ରଜା ରାଣୀଙ୍କି କହିଲେ । ଏ କଥା ଶୁଣି ସେ ପୁଅଟିକୁ ରଜାଙ୍କ କୋଳରେ ଦେଇ କହିଲେ, "ତୁମ ପୁଅକୁ ରଖ ! ତୁମେ ତୁମ ନିୟମ ଭାଙ୍ଗି ମୋତେ ମନା କଲ । ଏବେ ମୁଁ ମୋ ବାଟ ଦେଖୁଛି ।"

ଗଙ୍ଗା ଦେବୀ ଗଲାବେଳେ ଆଠ ଦେବତା ଗାଈ ଚୋରେଇ ଶାପ ପାଇଥିବା କଥା ରଜାଙ୍କୁ କହିଦେଇ ଗଲେ । କହିଲେ, "ଯେଉଁ ସାତ ପୁଅ ମଲେ, ସେମାନେ ସିମିତି ଶୀଘ୍ର ମରିବାକୁ ଶାପ ପାଇଥିଲେ । ଏଇ ପୁଅଟି ତମର ବହୁତ ଦିନ ଜୀଇଁବ ।"

ଗଙ୍ଗାଙ୍କର ଏଇ ପୁଅଟି ନାଁ ଦେବବ୍ରତ । ଦେବବ୍ରତ ବଡ଼ ହୋଇ ନାନା ଗୁଣର ହେଲାରୁ ବାପ ତାଙ୍କୁ ଯୁବରାଜ କରାଇ ଦେଲେ । ଯୁବରାଜ ବୋଇଲେ ଯେଉଁମାନେ ବାପ ଥାଉ ଥାଉ ରଜା ହୋଇ ମୁଲକ ବୁଝାସୁଝା କରନ୍ତି । ଦେବବ୍ରତ ବଡ଼ ବୁଦ୍ଧିମନ୍ତ । ସେ ବାପଙ୍କୁ ଭାରି ଭକ୍ତି କରନ୍ତି । ତାଙ୍କ ବୁଝାମଣାରେ କିଛି ଦୋଷ ନ ଥାଏ ।

ଥରେ ଶାନ୍ତନୁ ଶିକାର ଖେଳି ଯାଉଥିଲେ । ବାଟରେ ଗଙ୍ଗା କୂଳରେ ଗୋଟିଏ ବାଳିକାକୁ ଦେଖିଲେ । ସେ ଏକ କେଉଟର ଝିଅ । ତାର ସୁନ୍ଦର ରୂପ ଦେଖି ଶାନ୍ତନୁ ତାକୁ ବିଭା ହେବାକୁ ମନ କଲେ । ତହୁଁ ତା ବାପକୁ ଯାଇ କହିଲେ, "ତୁମ ଝିଅକୁ ଆମେ ବିଭା ହେବାକୁ ଦିଅ ।"

କେଉଟର ବଡ଼ ଭାଗ୍ୟର କଥା । ମହାରାଜା ତା ଜୋଇଁ ହେବେ, ସେ ମନା କରିବ କିମିତି ? ମାତ୍ର ଏତିକି ଜଣାଇଲା, "ତୁମଙ୍କର ବଡ଼ପୁଅ ଅଛନ୍ତି । ମୋ ଝିଅର ପୁଅ ହେଲେ ଯେବେ ସେ ରଜା ହେବ ବୋଲି କହିବ, ତେବେ ଦେବି ।" ରଜା ଏଥିକି କିଛି ଜବାବ ଦେଇ ପାରିଲେ ନାହିଁ । ମନ ଦୁଃଖରେ ଫେରି ଆସିଲେ । ସେଇ ଦିନୁଁ ତାଙ୍କ ମନ ଆଉ କେଉଁଥିରେ ଭଲ ଲାଗିଲା ନାହିଁ ।

ଦେବବ୍ରତ ଏଣେ ବାପାଙ୍କ ମନ କଥା ଜାଣି ପାରି କେଉଟ ଘରକୁ ଗଲେ । ତା ଝିଅକୁ ଦେବାକୁ କହିଲେ । କେଉଟ କହିଲା, "ତୁମେ ବଡ଼ ପୁଅ ଅଛ । ମୋର ନାତି ହେଲେ ତ ରଜା ହୋଇ ପାରିବ ନାହିଁ । ତେବେ କାହିଁକି ମୋ ଝିଅକୁ ଦେବି ?"

ଦେବବ୍ରତ କେଉଟ କଥା ଶୁଣି କହିଲେ, "ମୁଁ ପ୍ରତିଜ୍ଞା କରୁଛି ଯେ, ମୁଁ କେବେ ରଜା ହେବି ନାହିଁ ।"

କେଉଟ ପୁଣି କହିଲା, "ତୁମେ ସିନା ହଁ କହିଲ, ତୁମଙ୍କ ପୁଅ ହେଲେ କଣ ହଁ ଭରିବେ ?"

ଦେବବ୍ରତ ସେତେବେଳେ ଧର୍ମକୁ ସାକ୍ଷୀ ରଖି ଆଉ ଥରେ କହିଲେ, "ମୁଁ ଆଜିଠାରୁ ପ୍ରତିଜ୍ଞା କଲି, ମୁଁ କେବେ ବିଭା ହେବି ନାହିଁ ।"



ଭୀଷ୍ମଙ୍କ ପ୍ରତିଜ୍ଞା

ଦେବବ୍ରତଙ୍କ କଥା ଶୁଣି କେଉଟର ମନ ମାନିଲା । ସେ ତା'
ଝିଅକୁ ଦେଲା । ଏଇ ଝିଅଟି ନାଁ ସତ୍ୟବତୀ । ଶାନ୍ତନୁ ଏହାକୁ ବିଭା
ହେଲେ ।

ବାପଙ୍କ ସନ୍ତୋଷ ପାଇଁ ଦେବବ୍ରତ ଇମିତି ପ୍ରତିଜ୍ଞା କରିବାରୁ ସମସ୍ତେ ତାଙ୍କୁ 'ସାବାସ୍' କହିଲେ । ଆଉ, ଏ କଠିନ ପ୍ରତିଜ୍ଞା ହୋଇଁ ଲୋକେ ତାଙ୍କୁ ସେଇ ଦିନୁ ଭୀଷ୍ମ ବୋଲି ଡାକିଲେ । ବାପ ପୁଅକୁ ଆଶୀର୍ବାଦ କରି କହିଲେ, "ବାବୁ, ମୁଁ ବଡ଼ ସନ୍ତୁଷ୍ଟ ହେଲି । ମୁଁ ତତେ ଏଇ ବର ଦେଉଛି ଯେ, ତୁ ତୋ ଇଚ୍ଛା ହେଲେ ମରିବୁ, ତତେ କେଏ ମାରି ପାରିବେ ନାହିଁ ।"

---

## ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଜନ୍ମହେଲେ

ସତ୍ୟବତୀଙ୍କର ଯୋଡ଼ିଏ ପୁଅ ହେଲା ପରେ ଶାନ୍ତନୁ ମରିଗଲେ । ମାତ୍ର ଏ ପୁଅ ଯୋଡ଼ିକ ବେଶୀ ଦିନ ଜୀଇଁଲେ ନାହିଁ । ବଡ଼ ପୁଅ ଚିତ୍ରାଙ୍ଗଦ ଏକ ରଜା ସାଙ୍ଗେ ଯୁଦ୍ଧ କରି ମଲେ । ସେ ମଲାରୁ ତାଙ୍କ ସାନ ଭାଇ ବିଚିତ୍ରବୀର୍ଯ୍ୟ ଗାଦିରେ ବସିଲେ । କାଶୀ ରଜାଙ୍କ ଦୁଇଟି ଝିଅ ଅମ୍ବିକା ଓ ଅମ୍ବାଳିକାଙ୍କୁ ଭୀଷ୍ମ ଜବରଦସ୍ତିରେ ବାହା-ସଭାରୁ ନେଇ ଆଣି ବିଚିତ୍ରବୀର୍ଯ୍ୟଙ୍କୁ ବାହା କରାଇ ଦେଲେ । ମାତ୍ର ଦୈବ ଦୁର୍ଯୋଗରୁ ତାଙ୍କର ମଧ୍ୟ କିଛି ପୁଅ ଝିଅ ନ ହେଉଣୁ ସେ ମରିଗଲେ । ସମସ୍ତେ ବିଚାରିଲେ, କୁରୁକୁଳ ବୁଡ଼ିଯିବ । କାହିଁକି ନା, ଗାଦିରେ ବସିବାକୁ ଆଉ କେଏ ପୁଅ ରହିଲେ ନାହିଁ । ଯେ ରହିଲେ ଭୀଷ୍ମ, ସେ ତ ରଜା ହେବେ ନାହିଁ କି ବାହା ହେବେ ନାହିଁ । ଏଥିକି ମା ସତ୍ୟବତୀଙ୍କର ଭାବିଲେଣି ପଡ଼ିଲା ।

ସତ୍ୟବତୀ ଶାନ୍ତନୁଙ୍କୁ ବାହା ହେବା ଆଗରୁ ତାଙ୍କର ଗୋଟିଏ ପୁଅ ହୋଇଥିଲା । ଥରେ ପରାଶର ବୋଲି ଜଣେ ବଡ଼ ଋଷି ଗଙ୍ଗା ନଈ ପାରି ହେଲା ବେଳେ ନାଆରେ ସତ୍ୟବତୀଙ୍କୁ ଦେଖିଲେ ।

ତାଙ୍କ ଆଶୀର୍ବାଦରୁ ସତ୍ୟବତୀଙ୍କର ଗୋଟିଏ ପୁଅ ହେଲା । ସେଇ ପୁଅଟିର ନାଁ ବ୍ୟାସଦେବ । ବାପଙ୍କ ପରି ବ୍ୟାସ ଜଣେ ବଡ଼ ଋଷି ହେଲେ ।

କୁରୁକୁଳ ରଖିବା ପାଇଁ ମା ସତ୍ୟବତୀ ବ୍ୟାସଙ୍କୁ ସ୍ମରଣ କଲେ । ଋଷିମାନେ ତ ପରର ମନ କଥା ଜାଣି ପାରନ୍ତି । ମା ଡାକିବାର ଜାଣି ପାରି ସେ ଆସି ହସ୍ତିନାରେ ପହଞ୍ଚିଲେ । ମାଆଙ୍କ କହିବାରେ ସେ ଅମ୍ବିକା, ଅମ୍ବାଳିକା ଆଉ ତାଙ୍କର ଗୋଟିଏ ଦାସୀଙ୍କୁ ଆଶୀର୍ବାଦ ଓ ଅନୁଗ୍ରହ କଲେ । ଅମ୍ବିକାଙ୍କର ଧୃତରାଷ୍ଟ୍ର, ଅମ୍ବାଳିକାଙ୍କର ପାଣ୍ଡୁ ଏବଂ ଦାସୀର ବିଦୁର ବୋଲି ଏହିପରି ୩ଟି ପୁଅ ହେଲେ । ଧୃତରାଷ୍ଟ୍ର ଜନ୍ମରୁ ଅନ୍ଧ ଥିଲେ ।

---

## କୌରବ ଓ ପାଣ୍ଡବ ମିଶି ଶହେ ପାଞ୍ଚ ଭାଇ

ଭୀଷ୍ମ ତ କୁଳକୁ ମୁରବି । ସେ ଏ ପିଲା ତିନୋଟିଙ୍କି ବାପ ପରି ଆଦରରେ ପାଳିଲେ, ଗୁରୁ ରଖି ପାଠ ପଢାଇଲେ; ତା ପରେ ବଡ଼ ହେବାରୁ ବାହା ଚୂଡ଼ା କରାଇ ଦେଲେ । ବଡ଼ ଭାଇ ଧୃତରାଷ୍ଟ୍ର ତ ଜନ୍ମରୁ ଅନ୍ଧ ! ଅନ୍ଧ ଜଣେ ଆଉ ରାଜ୍ୟ ବୁଝା ସୁଝା କରି ପାରନ୍ତା କି ? ଭୀଷ୍ମ ସାନ ଭାଇ ପାଣ୍ଡୁଙ୍କୁ ଗାଦିରେ ବସାଇ ରଜା କରାଇଲେ ।

ଧୃତରାଷ୍ଟ୍ର ଗାନ୍ଧାର ଦେଶ ରଜାଙ୍କ ଝିଅଙ୍କୁ ବାହା ହେଲେ । ତାଙ୍କ ଭାର୍ଯ୍ୟାଙ୍କ ନାଁ ଗାନ୍ଧାରୀ । ଶ୍ରୀକୃଷ୍ଣଙ୍କ ପିଉସୀ-ନାମୀ କୁନ୍ତୀ, ଆଉ ମଦ୍ରଦେଶ ରଜାଙ୍କ ଝିଅ ମାଦ୍ରୀଙ୍କି ପାଣ୍ଡୁ ବାହା ହେଲେ ।

ଗାନ୍ଧାରୀଙ୍କର ଶହେ ପୁଅ, ଗୋଟିଏ ଝିଅ ହେଲେ । ବଡ଼ ପୁଅ ନାଁ ଦୁର୍ଯ୍ୟୋଧନ, ତାଙ୍କ ତଳକୁ ଦୁଃଶାସନ । ଦୁଃଶାସନ ତଳକୁ

ଆଉରି ଅଠାନବେ ଭାଇ ଥିଲେ । କୁନ୍ତୀଙ୍କ ଠାରୁ ଯୁଧିଷ୍ଠିର, ଭୀମ, ଅର୍ଜୁନ ଆଉ ମାଦ୍ରୀଙ୍କ ଠାରୁ ନକୁଳ, ସହଦେବ—ଏସବୁ ପାଞ୍ଚ ପୁଅ ଜନ୍ମ ହୋଇଥିଲେ । କୁରୁବଂଶ ନାଁ ଅନୁସାରେ ଧୃତରାଷ୍ଟ୍ରଙ୍କ ପୁଅମାନଙ୍କ ନାଁ କୌରବ ହେଲା । ପାଣ୍ଡୁଙ୍କ ନାଁରୁ ତାଙ୍କ ପୁଅମାନେ ପାଣ୍ଡବ ବୋଲାଇଲେ ।

ପାଣ୍ଡବମାନଙ୍କର ମା ଥିଲା କୁନ୍ତୀ ଆଉ ମାଦ୍ରୀ ଅଟନ୍ତି, ମାତ୍ର ସେମାନଙ୍କ ବାପ ଜଣେ ଜଣେ ଦେବତା । ଧର୍ମଦେବତାଙ୍କ ଠାରୁ ଯୁଧିଷ୍ଠିର, ପବନ ଦେବତାଙ୍କ ଠାରୁ ଭୀମ, ଇନ୍ଦ୍ରଙ୍କ ଠାରୁ ଅର୍ଜୁନ ଓ ଅଶ୍ୱିନୀକୁମାରଙ୍କ ଠାରୁ ନକୁଳ ଓ ସହଦେବ ଜନ୍ମ ହୋଇଥିଲେ । ଏଇ ପାଞ୍ଚ ଭାଇଯାକ ଦେବତାଙ୍କ ଅନୁଗ୍ରହରୁ ଗୋଟିଏ ଗୋଟିଏ ବର୍ଷରେ ବଡ଼ ଥିଲେ ।

ପଞ୍ଚପାଣ୍ଡବ ଜନ୍ମ ହେଲା ଉତ୍ତାରୁ ପାଣ୍ଡୁ ମରିଗଲେ । ତାଙ୍କ ସାନ ରାଣୀ ମାଦ୍ରୀ ମଧ୍ୟ ନିଆଁରେ ପଶି ମଲେ । ଭୀଷ୍ମ ପାଣ୍ଡୁଙ୍କ ପିଲାମାନଙ୍କୁ ଆଣି ପାଳିଲେ ।

---

## ଭାଇ ଭଗାରି ହେଲେ

କୁରୁପାଣ୍ଡବ ଶହେ ପାଞ୍ଚ ଭାଇଙ୍କ ଭିତରେ ଯୁଧିଷ୍ଠିର ବଡ଼ । ତାଙ୍କର ଭଲ ଗୁଣ ଦେଖି ଲୋକେ ତାଙ୍କୁ ଭଲ ପାଉଥାନ୍ତି, 'ସାବାସ୍' କହୁଥାନ୍ତି । ହେଲେ, ଦୁର୍ଯ୍ୟୋଧନ ତ ବଡ଼ ଭାଇଙ୍କ ପୁଅ, ସେ ଏ ସବୁ ଦେଖି ସହି ପାରନ୍ତି ନାହିଁ । ତାଙ୍କ ମନ 'ମତେ କାହିଁକି କିଏ ଭଲ କହୁ ନାହାନ୍ତି ?' ଯେ ଭଲ, ସେ ଭଲ, ଦୁଷ୍ଟଙ୍କୁ ଲୋକେ କିଆଁ ଭଲ ବୋଲିବେ ? ଦୁର୍ଯୋଧନ ପରର ସୁଖ

ଦେଖିପାରନ୍ତି ନାହିଁ । ପାଣ୍ଡବମାନଙ୍କୁ ଲୋକେ ଭଲ କହିବାରୁ ସେ ସବୁବେଳେ ତାଙ୍କୁ ହିଂସା କରୁଥାନ୍ତି ।

ଦୁର୍ଯ୍ୟୋଧନ ହେବକା ପାଣ୍ଡବମାନଙ୍କୁ ଭଲ ନ ପାଇବାର ଆଉ ଗୋଟିଏ କଥା ଥିଲା । ଭାଇମାନଙ୍କ ଭିତରେ ଭୀମ ସବୁଠୁ ବଳୁଆ । ଖେଳରେ ତାଙ୍କୁ କିଏ ହେଲେ ପାରନ୍ତି ନାହିଁ । ତାଙ୍କପରି ହେଣ୍ଡେଡ଼ା ପିଲା ଭାଇଙ୍କ ଭିତରେ ଆଉ କିଏ ନଥାନ୍ତି । ଖେଳିଲା ବେଳେ ସେ ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କୁ ନାକ୍ ମ୍ ମାରନ୍ତି । ପୁଞ୍ଜା ପୁଞ୍ଜା କରି ଘୋଷାରି ନେଇଯାନ୍ତି; ସେମାନେ 'ଭେଁ' 'ଭେଁ' କାନ୍ଦୁଥା'ନ୍ତି । ଗାଧୋଇଲା ବେଳେ ପଞ୍ଚାଙ୍କ ଚୁଟି ଏକାଠି ଧରି ପାଣିରେ ବୁଡ଼ି ପଡ଼ନ୍ତି । ସେମାନେ ଆକଟଅ ହେଲା ପରେ ଛାଡ଼ନ୍ତି । ପଞ୍ଚାଙ୍କୁ କୋଳି ଗଛରେ ଚଢ଼ାଇ ଗଛଟାକୁ ଏପରି ଭିଡ଼ିରେ ଝାଙ୍କି ଧରନ୍ତି ଯେ, କୋଳି ସଙ୍ଗେ ସମସ୍ତେ ତଳେ କୁଢ଼େଇ ହୋଇ ପଡ଼ନ୍ତି । ସେମାନେ ପଡ଼ି କାନ୍ଦୁଥାନ୍ତି, ଏ ସୁଖରେ ସବୁ କୋଳି ଗୋଟେଇ ଖାନ୍ତି । ଏଇଥି ପାଇଁ ଭୀମକୁ ମାରିଦେବାକୁ ଦୁର୍ଯ୍ୟୋଧନ ସବୁ-ବେଳେ ବାଟ ଖୋଜୁଥାନ୍ତି ।

ଥରେ ସେ ସବୁ ଭାଇଯାକୁ ତାଙ୍କ ଗଙ୍ଗାକୁ ଖେଳିବାକୁ ନେଲେ । ସେଠି ସଭିଏଁ ଖେଳିଲା ଅଗରୁ ଖିଆପିଆ କଲେ । ଦୁର୍ଯ୍ୟୋଧନ ଅଗରୁ ବଗୁର ଭୀମଙ୍କୁ ଦେବେ ବୋଲି ଗୋଟିଏ ବିଷ ଲଡ଼ୁ ନେଇ ଥାନ୍ତି । ସମସ୍ତେ ଯେତେବେଳେ ଖୁସିରେ ଖାଉଥିଲେ ଦୁର୍ଯ୍ୟୋଧନ ଆଦରରେ ସେ ଲଡ଼ୁଟିକି ଭୀମଙ୍କୁ ଖୋଇ ଦେଲେ । ଭୀମ ତ ଭାରି ପେଟୁ, ଏତେ ଛନ୍ଦ କପଟ ଜାଣନ୍ତି ନାହିଁ, ଟାକୁକିନା ଗିଳିଦେଲେ ।

ଗିଳିଦେଲେ ସିନା, ସାଙ୍ଗେ ସାଙ୍ଗେ ଦେହରେ ବିଷ ଜରିଗଲା । ଦୁର୍ଯ୍ୟୋଧନ ତାଙ୍କ ଉପରେ ଖାଲି ନଜର ରଖିଥାନ୍ତି । ଯେତେବେଳେ

ସେ ବିଷ ଜ୍ୱାଳାରେ ଅଚେତା ହୋଇ ପଡ଼ିଗଲେ, ଦୁର୍ଯ୍ୟୋଧନ ଧାଇଁ ଯାଇ ତାଙ୍କ ହାତ ଗୋଡ଼ ବାନ୍ଧି ନଈ ଗର୍ଭକୁ ଗଡ଼େଇ ଦେଲେ । ମନେ ମନେ ଭାବିଲେ, "ଯାଅରେ ପୁଅ ଯାଅ, ଆଜି ବଳ କରିବୁ ଯେ !"

ଏଣେ ଖେଳ ସରିଲାରୁ ସମସ୍ତେ ଶୁଖିଲା ଲୁଗାପଟା ପିନ୍ଧି ଘରକୁ ଆସିଲେ । ଯୁଧିଷ୍ଠିର ହେଉଛନ୍ତି ଭୀମକୁ ନ ଦେଖି କାନ୍ଦ କାନ୍ଦ ହୋଇ ଆସି ମାଆଙ୍କ ପାଖେ କହିଲେ । ପୁଅ ମଲା କି ହଜିଲା ବୋଲି କୁନ୍ତୀ ଭେଁ ଭେଁ କାନ୍ଦିଲେ । କଥା ଶୁଣି ବିଦୁର ଆସି ପହଞ୍ଚିଲେ । ସେ ଭାରି ଭଲ ଲୋକ । କାହା ଅହିତରେ ନ ଥାନ୍ତି । ଆସି କୁନ୍ତୀଙ୍କି ତୁନି କରାଇ କହିଲେ," ଋଷି ମଠେ କହିଚନ୍ତି, ତୁମ ପୁଅ ମାନଙ୍କର କିଏ କିଛି ହେଲେ କରି ପାରିବେ ନାହିଁ । ତୁମେ କାନ୍ଦୁଚ କାହିଁକି ?" ତାଙ୍କ କଥା ଶୁଣି କୁନ୍ତୀ ତୁନି ହେଲେ ।

ତେଣେ ଭୀମ ପାଣିରେ ପଡ଼ି ପାତାଳରେ ଯାଇ ପଡ଼ିଲେ । ପାତାଳରେ ତ ନାଗ ରଜା; ମନୁଷ୍ୟ ପିଲାଟିକୁ ଦେଖି ସାପମାନେ ଆସି କାମୁଡ଼ିଲେ । ସାପ କାମୁଡ଼ିଲେ ମନୁଷ୍ୟ ମରି ଯିବା କଥା । ମାତ୍ର ଅରକ୍ଷିତକୁ ଦଇବ ସାହା । ଭୀମ ଯେଉଁ ବିଷ ଖାଇଥିଲେ ସାପବିଷ ବାଜିବାରୁ ସେହି ବିଷ କୁଆଡ଼େ ଉଡ଼ିଗଲା । ଭୀମ ଆଖି ଫିଟାଇ ଦେଖନ୍ତି ତ ସେ ଆସି ପାତାଳରେ ପହଞ୍ଚିଛନ୍ତି । ସାପମାନେ ତାଙ୍କୁ କାମୁଡ଼ିବାରୁ ସେ ରାଗରେ ସେମାନଙ୍କୁ ଗୋଡ଼ାଇ କରି ମାରିଲେ । ସେମାନେ ଭୟରେ ପଳାଇଯାଇ ସାପରଜା-ବାସୁକୀ ଆଗେ ଜଣା କଲେ,"ଗୋଟିଏ ମନୁଷ୍ୟ ପିଲା ଆସି ଆମକୁ ମାରୁଚି ।" ବାସୁକୀ ରାଗରେ ଆସିଲେ ।

ଦୈବକୁ କଣ ହୋଇଛି ନା, ଲେଖାରେ ଭୀମ ବାସୁକୀଙ୍କ ପଣନାତି । ସେ ଆଉ ରାଗ କରିବେ କଣ ? ଦେଖିଲାକ୍ଷଣି ଆଦରରେ ଭୀମଙ୍କୁ କୋଡ଼କୁ ନେଇଗଲେ । ଆଉ ସାପମାନେ ଭାରି ଖୁସି ହେଲେ । ପାତାଳରେ ଅମୃତ ଥାଏ । ନାତିର ବଳ ବଢ଼ିବ ବୋଲି ବାସୁକୀ ଭୀମଙ୍କୁ କହିଲେ, "ପିଅ ବାବୁ, ଯେତେ ପିଇବୁ ପିଇ ତୋହର ବଳ ହେବ ।"

ଭୀମ ତ ବିଷ ଜ୍ୱାଳାରେ ଶୋଷେଇ ଥିଲେ; ଲଗାଇଲେ ମୁହଁ ଯେ କୁଣ୍ଡ କୁଣ୍ଡ କରି ଆଠ କୁଣ୍ଡ ଅମୃତ ପିଇଦେଲେ । ସେଠୁ ଯାଇ ଅଜାଙ୍କ ଉଆସରେ ନିଃଘୋଡ଼ ନିଦରେ ଶୋଇଲେ । ଆଠଦିନ ଉତ୍ତାରୁ ତାଙ୍କ ନିଦ ଭାଙ୍ଗିଲା । ଉଠି ଅନ୍ତଃପୁରରେ ଅଜା ଘରେ ପିଠାପଣା ଗ୍ରାସେ ଖାଇଲେ । ନାଗମାନେ ତାଙ୍କୁ ବାଟ ଦେଖାଇ ଗଙ୍ଗାକୂଳରେ ଆସି ଛାଡ଼ି ଦେଇ ଗଲେ ।

ଅମୃତ ପିଇ ତ ଭୀମଙ୍କ ବଳ ହୋଇଥିଲା, ଡେଇଁ ଡେଇଁ ଆସି ଘରେ ପହଞ୍ଚିଲେ । କୁନ୍ତୀ ପୁଅଙ୍କୁ ସନ୍ତୋଷରେ କୁଣ୍ଢାଇ ପକାଇଲେ । ଭାଇମାନେ ଭାରି ଖୁସି ହେଲେ । ଭୀମ ସମସ୍ତଙ୍କ ଆଗେ ଦୁର୍ଯ୍ୟୋଧନ ବିଷ ଦେବା କଥା କହିଦେଲେ । ମାତ୍ର ସେ କଥା ଆଉ କିଏ ଜାଣିଲେ ଗହଳ ପଡ଼ିବ, ଅନିଷ୍ଟ ହେବ ବୋଲି କାହାକୁ ନ କହିବାକୁ ଯୁଧିଷ୍ଠିର ଭାଇମାନଙ୍କୁ ମନା କରି ଦେଲେ ।

ତେଣେ ଦୁର୍ଯ୍ୟୋଧନ ଭୀମ ଜୀଇଁ କରି ଫେରି ଆସିବା ଜାଣି ମନେ ମନେ ଆଉରି ହିଂସା କଲେ ।

# ଦ୍ରୋଣାଚାର୍ଯ୍ୟଙ୍କ କଥା

ଭରଦ୍ୱାଜ ଋଷିଙ୍କର ଦ୍ରୋଣ ବୋଲି ଗୋଟିଏ ପୁଅ ହେଲା । ଦ୍ରୋଣ ପିଲାଦିନୁ ଭାରି ବୁଦ୍ଧିଆ । ସେ ବାପାଙ୍କ ପାଖରୁ ଅନେକ ପାଠ ପଢ଼ିଲେ, ଆଉ ପର୍ଶୁରାମଙ୍କଠାରୁ ଯାଇ ଧନୁର୍ବିଦ୍ୟା ଶିଖିଲେ । ପଞ୍ଚାଳ ଦେଶ ରାଜାଙ୍କ ପୁଅ ଦ୍ରୁପଦ ପିଲାଦିନେ ଦ୍ରୋଣଙ୍କ ସଙ୍ଗେ ପାଠ ପଢ଼ୁଥାନ୍ତି । ଥରେ ସେ ଦ୍ରୋଣଙ୍କୁ କହିଲେ, "ଜାଣିଲ ସାଙ୍ଗ, ମୁଁ ଯେତେବେଳେ ରଜା ହେବି ତୁମର ପଇସାପତ୍ରର କିଛି ଅଭାବ ରହିବ ନାହିଁ; ଗଲେ ଦେବି ।" ପିଲା ଦିନର ଏ କଥାଟି ଦ୍ରୋଣଙ୍କର ମନେ ଥାଏ ।

ଦ୍ରୋଣଙ୍କର ବୟସ ହେଲା । ସେ ବାହା ହେଲେ, ମାତ୍ର ବଡ଼ ଗରିବ ହୋଇଗଲେ । ତାଙ୍କର ପୁଅଟିଏ ଜନ୍ମ ହେଲା । ସେହି ପୁଅଟି ନାଁ ଅଶ୍ୱତ୍ଥାମା । ଅଶ୍ୱତ୍ଥାମାଙ୍କୁ ଦୁଧ ଟିକିଏ ଦେବା ପାଇଁ ଘରେ ଗାଈ-ଟିଏ ନଥାଏ । ସେତେବେଳକୁ ଦ୍ରୁପଦ ରଜା ହୋଇଥାନ୍ତି । ଦ୍ରୋଣଙ୍କର ପିଲା ଦିନ କଥା ମନେ ପଡ଼ିଲା । ସେ ତହୁଁ ଦ୍ରୁପଦଙ୍କୁ ଗାଈଟିଏ ମାଗିବାପାଇଁ ପୁଅ ମାଇପଙ୍କୁ ଧରି ପଞ୍ଚାଳ ଗଲେ । ଗରିବ କପାଳରେ ତ ସବୁ ଦୁଃଖ ଲେଖା; ଏ ସିମିତ ଯାଇ ଦ୍ରୁପଦଙ୍କୁ "ସାଙ୍ଗ" ବୋଲି ଡାକିଲେ, ଦ୍ରୁପଦ ରାଗିଯାଇ ଗଡେଇ ହେଲା ପରି କହିଲେ,"ଆହେ ଦେଖ ହେ, କୁଆଡ଼ୁ ଗରିବ ବ୍ରାହ୍ମଣଟିଏ ଆସି କହୁଚି ରଜାଙ୍କ ସାଙ୍ଗ ।" ଦ୍ରୋଣ ସେଠୁ ଦୁଃଖରେ ପଳାଇ ଆଇଲେ । ଆସି ଜିଦ୍ କଲେ, "ଏହାକୁ ଶାସ୍ତି ନ ଦେଲେ ଏ ବ୍ରାହ୍ମଣ ଦେହାକାର ରାଗ ଯିବ ନାହିଁ ।"

ଏମିତି କେତେ ଦିନ ଗଲା । ଦ୍ରୋଣ ଦିନେ ହସ୍ତିନା ବାଟେ କୁଆଡ଼େ ଯାଉ ଯାଉ ଦେଖିଲେ, କୁରୁ ପାଣ୍ଡବ ଭାଇମାନେ ଗୋଟେ

ଲମ୍ବା ପେଣ୍ଡୁ କୂଅରେ ପକାଇ ଆଉ କାଢ଼ି ପାରୁ ନାହାନ୍ତି । ଏ ସେଠାକୁ ଯାଇ ପିଲାମାନେ କହିବାରୁ ଶର ଉପରେ ଶର ମାରି ମାରି ପେଣ୍ଡୁଟିକି ଉପରକୁ କାଢ଼ି ଆଣିଲେ । ପିଲାମାନେ ଦେଖି ଭାରି ଆଶ୍ଚର୍ଯ୍ୟ ହୋଇଗଲେ । ଏକଥା ଯାଇ ଭୀଷ୍ମଙ୍କୁ କହିଲେ । ଭୀଷ୍ମ ଜାଣି-ପାରିଲେ ଯେ ଏ ନିଶ୍ଚୟ ଦ୍ରୋଣଙ୍କ କାର୍ଯ୍ୟ । ସେ ଦ୍ରୋଣଙ୍କୁ ଉଆସକୁ ଡକାଇ ନେଲେ, କୁରୁ ପାଣ୍ଡବ ଭାଇମାନଙ୍କର ଗୁରୁ କରାଇ ରଖିଲେ । ସବୁ ପିଲେ ତାଙ୍କ ପାଖେ ପାଠ ପଢ଼ିଲେ, ଧନୁର୍ବିଦ୍ୟା ଶିଖିଲେ ।

---

## ଯୁଦ୍ଧ ଖେଳ ଦେଖା ହେଲା

ଦ୍ରୋଣ ରଜାପୁଅମାନଙ୍କର ଗୁରୁ ହେବାରୁ ପିଲାଏ ଭାରି ଖୁସିତ ହେଲେ, ନାନା କଥା ଶିଖିଲେ । ନାନା ଦେଶରୁ ଆଉ କେତେ ରଜାପୁଅ ଆସି ତାଙ୍କ ପାଖେ ପଢ଼ା ଆରମ୍ଭ କଲେ । ସମସ୍ତଙ୍କଠାରୁ ଅର୍ଜୁନ ଧନୁ ବିଦ୍ୟା, ଭୀମ ଗଦା ଖେଳ ଭଲ ଶିଖିଲେ । ଦୁର୍ଯ୍ୟୋଧନ ଗଦା ଖେଳନ୍ତି; ହେଲେ, ଭୀମଙ୍କ ପରି ନୁହନ୍ତି ।

ଦ୍ରୋଣ ସବୁ ଶିଖାଇ ସାରିଲାରୁ ଶିଷ୍ୟମାନଙ୍କୁ ପରୀକ୍ଷା କରିବାକୁ ଇଚ୍ଛିଲେ । ଏଥିପାଇଁ ଏକ ବଡ଼ ପଡ଼ିଆ ସଜା ହେଲା । ପଡ଼ିଆ ଚାରିପାଖେ ଘର ତୋଳା ହେଲା । ଅନେକ ଆଉ ରଜା ପ୍ରଜା ଆସି ଖେଳ ଦେଖିବାକୁ ଜମା ହେଲେ । ପରୀକ୍ଷା ଦିନ ବାଇଦ ବାଜଣାରେ ଖେଳ ପଡ଼ିଆ ଉଚ୍ଛୁଳିଲା । ଚାରି ପାଖେ ଦେଖଣାହାରିଏ ଜମା ହୋଇ ଥାନ୍ତି, ବୁଢ଼ାଗୁରୁ ଦ୍ରୋଣ ପାଚିଲା ଦାଢ଼ି ଲମ୍ବାଇ, ଶଧା ପଇତା ଘେନି ଶିଷ୍ୟଙ୍କୁ ଧରି ଆସି ମଝିରେ ପହଞ୍ଚିଲେ । ଜଣକୁ

ଜଣ ସେ ଆଗକୁ ଗ୍ଭଲୁଥାନ୍ତି । ସମସ୍ତେ ନିଜ ନିଜର ବଳ କୌଶଳ ଦେଖାଉ ଥାନ୍ତି । ଲୋକେ କେତେବେଳେ 'ସାବାସ୍' 'ସାବାସ୍' କହୁଥାନ୍ତି ।

ମଝିରେ ଭୀମ ଆଉ ଦୁର୍ଯ୍ୟୋଧନଙ୍କ ଗଦା ଯୁଦ୍ଧ ଲାଗିଲା । ସେ ଖେଳ ଦେଖି ଲୋକଙ୍କର ଆଖି ବୁଜି ହୋଇଗଲା । ଆଷାଢ଼ ମାସର ମେଘ ଗର୍ଜ୍ଜନ ପରି ସେମାନେ ପାଟି କରୁଥାନ୍ତି, ଆଉ ବଜ୍ର ପଡ଼ିଲା ପରି ଗଦା ବାଡ଼ଉ ଥାନ୍ତି ।

ଶେଷକୁ ଅର୍ଜୁନ ଆସିଲେ । ସେ ନାନା ବାଣ ଖେଳ ଦେଖାଇଲେ । ବାଣ ମାରି ସେ ନିଆଁ ଜଳାଇଲେ, ମେଘ ବରଷାଇଲେ, ପବନ ବୁହାଇଲେ । ଲୋକେ ତା ଦେଖି ତାଟଙ୍କା ହୋଇଗଲେ । କହିଲେ "ସାବାସ୍ ଅର୍ଜୁନ, ସାବାସ୍ ।"

ଅର୍ଜୁନଙ୍କ ପ୍ରଶଂସା ଶୁଣି କର୍ଣ୍ଣଙ୍କ ଦେହ ସହିଲା ନାହିଁ । ସେ ହେଉଚନ୍ତି ଧର୍ମ୍ମରେ ପାଣ୍ଡବଙ୍କ ବଡ଼ ଭାଇ । କୁନ୍ତୀ ପିଲା ଥିଲାବେଳେ ସୂର୍ଯ୍ୟଙ୍କ ଅନୁଗ୍ରହରୁ ତାଙ୍କର ଗୋଟିଏ ପୁଅ ହୋଇଥିଲା । ସେ ତାକୁ ନଈରେ ଭସାଇ ଦେଇଥିଲେ । ଜଣେ ରଥ ଚଲାଇବା ଲୋକ ପିଲାଟିକୁ ପାଇ ଆପଣା ପୁଅ ପରି ପାଳିଲା । ସେଇ ପିଲାଟି ନା କର୍ଣ୍ଣ ହେଲା । କର୍ଣ୍ଣ ଅର୍ଜୁନଙ୍କ ପରି ଭାରି ବହୁଆ, ଆଉ ସୁନ୍ଦର । ଦ୍ରୋଣଙ୍କ ପାଖେ ସେ ପାଠ ପଢୁଥିଲେ । ମାତ୍ର ଦୁର୍ଯ୍ୟୋଧନଙ୍କ ସାଙ୍ଗ ହୋଇ ପାଣ୍ଡବଙ୍କ ଅହିତ ପାଞ୍ଚୁଥାନ୍ତି । କର୍ଣ୍ଣ ଜନ୍ମ ହେବା କଥା କୁନ୍ତୀଙ୍କ ଛଡ଼ା ଆଉ କେଏ ଜାଣି ନ ଥିଲେ ।

କର୍ଣ୍ଣ ଯେତେବେଳେ ଅର୍ଜୁନଙ୍କ ସଙ୍ଗେ ଲଢ଼ିବାକୁ ଉଠିଲେ, ସଭାଲୋକେ କହିଲେ, "କର୍ଣ୍ଣ ରଜା ନୁହନ୍ତି କି ରଜାପୁଅ ନୁହନ୍ତି । ତାଙ୍କ ବାପ ମା ଠିକ୍ ନାହିଁ । ସେ କିମିତି ରଜାପୁଅ ଅର୍ଜୁନ ସଙ୍ଗେ ଲଢ଼ିବେ ?"

କର୍ଣ୍ଣଙ୍କ ମୁହଁ ରଙ୍ଗ ପଡ଼ିଗଲା । ସେ କିଛି କହି ପାରିଲେ ନାହିଁ । ମାତ୍ର ତାଙ୍କ ମନରେ ଦୁଃଖ ଦେଖି ଦୁର୍ଯ୍ୟୋଧନ ସମ୍ଭାଳି ନ ପାରି କହିଲେ,"କର୍ଣ୍ଣ ସବୁ ରଜା ନୁହନ୍ତି ? ମୁଁ ଏଇକ୍ଷଣି ତାଙ୍କୁ ଅଙ୍ଗ ଦେଶର ରଜା କରୁଛି—ଆସୁ ଅର୍ଜୁନ ଲଢ଼ିବ ।" ଏହା କହି ସେ କର୍ଣ୍ଣଙ୍କ ମୁଣ୍ଡରେ ପାଟ ଶାଢ଼ୀ ବାନ୍ଧି ଦେଲେ ।

ବେଳ ବୁଡ଼ି ଯାଇଥିବାରୁ ସେ ଖେଳ ଆଉ ହେଲା ନାହିଁ । କର୍ଣ୍ଣଙ୍କର ଅର୍ଜୁନଙ୍କ ଉପରେ ବଡ଼ ରାଗ ରହିଲା ।

ପରେ ଗୁରୁଙ୍କୁ ଦକ୍ଷିଣା ଦେବା କଥା । ଦ୍ରୋଣ କହିଲେ, "ଦ୍ରୁପଦ ରଜାଙ୍କୁ ମୋ ପାଖକୁ ବାନ୍ଧି ଆଣିଲେ ମୁଁ ମୋ ଦକ୍ଷିଣା ପାଇଲି ।" ପ୍ରଥମେ କୌରବମାନେ ଯାଇ ହାରି ଫେରିଲେ, ତା ପରେ ପାଣ୍ଡବମାନେ ଗଲେ । ଦ୍ରୁପଦଙ୍କୁ ବାନ୍ଧି ଆଣି ଦ୍ରୋଣଙ୍କ ପାଖେ ଠିଆ କରାଇଲେ । ଦ୍ରୋଣ ଦ୍ରୁପଦଙ୍କୁ ଗାଳି ଫଜିତ ନ କରି ଭଲ ଭାବରେ କହିଲେ, "ତୁମ ରାଜ୍ୟ ଏବେ ମୋର ହୋଇଛି । ମାତ୍ର ତୁମେ ମୋର ପିଲା ଦିନର ସାଙ୍ଗ । ସେଥିଲାଗି ମୁଁ ତୁମକୁ ଅଧେ ଫେରାଇ ଦେଲି । ବାକୀ ଅଧକ ମୋର ।" ଏହା କହି ଛାଡ଼ି ଦେଲେ । ଦ୍ରୁପଦ ଲାଜରେ ମୁଣ୍ଡ ପୋତି ଅଧେ ରାଜ୍ୟ ନେଇ ଗଲେ ।

---

## ଜଉ ଘର ପୋଡ଼ା ହେଲା

ସେ ଧନ ଖେଳରେ ସମସ୍ତେ ଭୀମ ଆଉ ଅର୍ଜୁନଙ୍କୁ ପ୍ରଶଂସା କଲେ । ଏ କଥା ଦୁର୍ଯ୍ୟୋଧନ ସହି ପାରିଲେ ନାହିଁ । ଏ ଭିତରେ ଆଉ ଗୋଟିଏ କଥା ହେଲା । ଯୁଧିଷ୍ଠିର ତ କୁଳକୁ ବଡ଼, ଆଉ

ଗୁଣବନ୍ତ ଧୀର । ରାଜ୍ୟର ସମସ୍ତଙ୍କର ତାଙ୍କଠି ବୋଧ ଥାଏ । ଭୀଷ୍ମ, ଧୃତରାଷ୍ଟ୍ର ପ୍ରଭୃତି ବିଚାର କରି ତାଙ୍କୁ ଯୁବରାଜ କରାଇ ଦେଲେ । ଏ କଥାରେ ଜଳନ୍ତା ନିଆଁରେ ଲୁଣ ପକାଇଲା ପରି ଖଳ ଦୁର୍ଯ୍ୟୋଧନଙ୍କ ମନ ଜଳି ଉଠିଲା । ତାଙ୍କର କେତେ ଦୁଷ୍ଟ ସାଙ୍ଗ ଥାନ୍ତି । ତାଙ୍କ ମାମୁ ଶକୁନି ସେଥିରୁ ଜଣେ । ସେମାନେ ସମସ୍ତେ ବସି ବିଚାର କଲେ, "ଆଉ ସହି ହେବ ନାହିଁ । ଏ ପାଣ୍ଡବ ପଞ୍ଚାକୁ ବାରୁଣାବନ୍ତ ନେଇ ସେଠାରେ ଗୋଟିଏ ଜଉ ଘର କରି ପୋଡ଼ି ମାରି ଦେବା ।"

ଏହା ବିଚାର କରି ସେମାନେ ଆଗରୁ ପୁରୋଚନ ବୋଲି ଏକ ଦୁଷ୍ଟ ଲୋକ ହାତରେ ଏକ ଜଉ ଘର ତୋଳାଇ ରଖିଲେ । ଏଣେ ବାପାଙ୍କୁ କହି ସେଠାରେ ଗୋଟିଏ ମେଳା ଦେଖି ଯିବା ପାଇଁ କୁନ୍ତୀ ଆଉ ପାଣ୍ଡବମାନଙ୍କୁ ପଠାଇ ଦେଲେ । ଦୁର୍ଯ୍ୟୋଧନଙ୍କର ଏ ଖଳ ବୁଦ୍ଧି କେବଳ ବିଦୁର ଜାଣନ୍ତି । ପାଣ୍ଡବମାନେ ଗଲା ବେଳକୁ ସେ କୌଶଳରେ ଏ କଥାତକ ତାଙ୍କୁ ଜଣାଇ ଦେଇଥିଲେ । ସେମାନେ ଧର୍ମଙ୍କୁ ସାକ୍ଷୀ ରଖି ବାରୁଣାବନ୍ତ ଗଲେ ।

ଯାଇ ନୂଆ ଜଉ ଘରେ ରହିଲେ । ଦୁର୍ଯ୍ୟୋଧନ ଯେ ତାଙ୍କୁ ମାରିବାକୁ ପାଞ୍ଚୁଛନ୍ତି, ସେମାନେ ଜାଣିଗଲେ । ଏଣେ ବିଦୁର କଣ କରିଥାନ୍ତି ନା, ପାଣ୍ଡବଙ୍କ ପ୍ରାଣ ରକ୍ଷିବା ପାଇ ଲୋକ ପଠାଇ ସେ ଘର ବାହାର ପାଖକୁ ଗୋଟିଏ ସିନ୍ଧି ଗାଡ଼ ଖୋଳାଇ ଦେଇଥାନ୍ତି ।

ଦୈବ ଯୋଗକୁ ପୁରୋଚନ ଯେଉଁ ଦିନ ଘରେ ନିଆଁ ଲଗାଇବ, ସେ ଦିନ ଜଣେ ମାଇପି ତା ପାଞ୍ଚ ପୁଅକୁ ଧରି ସେ ପିଣ୍ଡାରେ ଶୋଇଥିଲା । ପାଣ୍ଡବମାନେ ଏହା ଜାଣନ୍ତିନାହିଁ । ପୁରୋଚନ

ଉଠିବା ଆଗରୁ ପାଣ୍ଡବମାନେ ସେ ଘରେ ନିଆଁ ଲଗାଇ ଘର ଗାତ ବାଟେ ପଳାଇଲେ ।

ସକାଳୁ ଦେଖିଲା ବେଳକୁ ପୁରୋଚନ ମରିଛି । ଆଉ ଛଅଟି ଶବ ପଡ଼ିଛି । ସମସ୍ତେ ଭାବିଲେ, ଏ ନିଶ୍ଚୟ ପାଣ୍ଡବ ଆଉ ତାଙ୍କ ମା । ରାଜ୍ୟର ସମସ୍ତେ ହାହାକାର କଲେ । ଦୁର୍ଯ୍ୟୋଧନ ମନେ ମନେ ଭାରି ଖୁସି ହେଲେ । ବାହାରିଲେ, "ଖାଅରେ ପୁଏ, ଭାଗ ଖାଅ ।" ମାତ୍ର ବିଦୁର ସବୁ କଥା ଜାଣି ଚୁପ୍ ହୋଇ ଥାନ୍ତି ।

---

## ହିଡ଼ମ୍ବ ଓ ବକ ଅସୁର ମଲେ

ପାଣ୍ଡବମାନେ ସେ ରାତି ରାତି ମାଆଙ୍କୁ ସାଙ୍ଗରେ ଧରି ଗଙ୍ଗା ପାର ହୋଇ ଆର ପାଖକୁ ଚାଲିଗଲେ । ଗଙ୍ଗା ଆର ପାଖେ ଭାରି ଜଙ୍ଗଲ । ଏମାନେ ଅନେକ ଦିନ ଜଙ୍ଗଲରେ ବୁଲିଲେ, ଖାଇବାକୁ ନ ପାଇ ବଡ଼ କଷ୍ଟ ପାଇଲେ, ଚାଲିବାକୁ ଗୋଡ଼ ହାତରେ ବଳ ରହିଲା ନାହିଁ । କେବଳ ଭୀମ ଥାନ୍ତି ବୋଲି ସମସ୍ତଙ୍କୁ କାନ୍ଧେଇ କରି ନିଅନ୍ତି, ନଈ ପଡ଼ିଲେ ପିଠିରେ ବସାଇ ପାରି କରନ୍ତି ।

ଇମିତି ଯାଇ ଯାଇ ଦିନେ ବଣରେ ଗୋଟିଏ ଗଛ ମୂଳେ ରହିଲେ । ସେ ବଣରେ ହିଡ଼ମ୍ବ ବୋଲି ଗୋଟିଏ ଅସୁର ଥାଏ । ଏମାନଙ୍କୁ ଦେଖି ସେ ଖାଇବାକୁ ଆସିଲା । ସମସ୍ତେ ଅସକତିଆ ହୋଇ ଶୋଇ ପଡ଼ିଥିଲେ, ଭୀମ ଏକା ଚାହିଁଥିଲେ । ଅସୁର ଆଁ କରି ଆସିବାରୁ ମା ଭାଇଙ୍କର ନିଦ ଭାଙ୍ଗି ଯିବ ବୋଲି ଭୀମ ତା ହାତ ଯୋଡ଼ାକ ଧରି ଘୋଷାରି ଦୂରକୁ ନେଇ ଗଲେ । ସେ ତ ଅସୁର,

ସେ ସେଠୁ ଭୀମକୁ ଧରିଲା । ଦୁହିଁଙ୍କ ଭିତରେ ଅଚ୍ଛା ହୋଇ ଖଣ୍ଡେ-ଘଣ୍ଟେ ଲାଗିଲା । ଢେଲା ପଥର ଫିଙ୍ଗି, ଗଛ ଉପୁଡ଼ା ଉପୁଡ଼ି ହୋଇ ମରାମରି ହେଲେ । ଶେଷକୁ ଭୀମ ତା ଛାତିରେ ବସି ଚିପି ମାରି ଦେଲେ । ଭାଇମାନେ ଉଠି ଭୀମଙ୍କର ଏ କାର୍ଯ୍ୟ ଦେଖିଲେ । ସେ ନ ଥିଲେ, ଅସୁର ସମସ୍ତଙ୍କୁ ଗିଳି ଦେଇ ଥାନ୍ତା ।

ହିଡ଼ମ୍ବ ଅସୁରର ହିଡ଼ମ୍ବୀ ବୋଲି ଗୋଟିଏ ଭଉଣୀ ଥିଲା । ଅସୁରୁଣୀ ହେଲେ କଅଣ ହେବ, ସେ ଭାରି ସୁନ୍ଦରୀ । ଭୀମ ତାକୁ ବାହା ହେଲେ । ଘଟୋତ୍କଚ ବୋଲି ତାଙ୍କର ଏକ ପୁଅ ହେଲା । ସେ ଭୀମଙ୍କ ପରି ବଳୁଆ ଆଉ ବୀର ।

ଏମାନେ ସେ ବଣ ଛାଡ଼ି ଆହୁରି ଦୂରକୁ ଗଲେ । ଯାଇ ଯାଇ ଏକଚକ୍ରା ବୋଲି ଏକ ଗାଁରେ ଜଣେ ବ୍ରାହ୍ମଣ ଘରେ ବସା କରି ରହିଲେ । ସେଠି ଥାଇ ପ୍ରତିଦିନ ଭିକ ମାଗି ଆଣି ବୁଲନ୍ତି । ଦିନେ ସେ ବ୍ରାହ୍ମଣ ଘରେ କାନ୍ଦ ବୋବାଳି ଶୁଭିଲା । କୁନ୍ତୀ ଯାଇ ବୁଝିଲେ ଯେ, ସେ ମୁଲକରେ ବକ ବୋଲି ଏକ ଅସୁର ଅଛି । ସେ ନିତି ଜଣଙ୍କ ଘରୁ ଗୋଟିଏ ମନୁଷ୍ୟ ଆଉ ପିଠାପଣା କରି ବୋଝେ ଖାଇବ । ସେ ଦିନ ସେ ବ୍ରାହ୍ମଣ ଘରର ପାଳି । କିଏ ଯିବ, ଏଥି ପାଇଁ ତା ଘରେ ଭାବେଣି ପଡ଼ିଛି !

ଭୀମ ଏ କଥା ଶୁଣି ସାଙ୍ଗେ ସାଙ୍ଗେ ସଜ ହେଲେ, ମାଆଙ୍କୁ କହିଲେ,"ଯାହା ଘରେ ଅଛେ ତାର ଉପକାର କରିବା ଆମ ଧର୍ମ । ମୁଁ ଯିବି, ଅସୁରକୁ ମାରି ଆସିବି ।" ଏହା କହି ସେ ଶଗଡ଼େ ପିଠା-ପଣା ଧରି ବଣକୁ ଗଲେ ।

ଅସୁର ଡେରେଣି ଉଠୁଛି ହେଲା ବୋଲି ରାଗରେ ଗୁହିଁ ବସି ଥିଲା । ଭୀମ ପିଠା ନେଇ ତାକୁ ଦେବେ କଣ, ନିଜେ ତା ଆଗେ

ଖାଇ ବସିଲେ । ଅସୁର ଦେଖି ଆଁ କରି ଆସିଲା ଭୀମଙ୍କୁ ଗୋଟା-ସଧିଆ ଗିଳିଦେବ ବୋଲି । ଦୁହେଁ ଧରାଧରି ଗଡ଼ାଗଡ଼ି ମହାମଲ୍ଲ



ଭୀମ ଓ ବକ ଅସୁର

ହେଲେ । ଗଛ ଉପାଡ଼ି, ଡାଳ ଭାଙ୍ଗି ଏ ଈାକୁ ସେ ସ୍ୱାକୁ ପିଟା ପିଟି ହେଲେ । କେତେ ସମୟ ପରେ ଭୀମ ଇମିତି ଜୋରରେ ଅସୁରକୁ ଧରି ଫିଙ୍ଗିଦେଲେ ଯେ, ସେ ଗଡ଼ଚଟାଙ୍ଗ ଦେଇ ଗାଁ ଗାଁ ହୋଇ

ଆଁଠା କରି ମରିଗଲା । ଅସୁର ମଲାରୁ ସେ ଗାଁ ଲୋକେ ଭାରି ଖୁସି ହେଲେ । ସୁଖରେ ରହିଲେ ।

---

## ପାଣ୍ଡବମାନେ ଦ୍ରୌପଦୀଙ୍କି ବିଭା ହେଲେ

ଦ୍ରୋଣ ଦ୍ରୁପଦ ରଜାଙ୍କ ରାଜ୍ୟରୁ ଅଧେ ଛଡ଼ାଇ ନେବା ଦିନୁ ତାଙ୍କର ଦ୍ରୋଣଙ୍କୋପରେ ରାଗ ରହିଲା । ଦ୍ରୋଣଙ୍କୁ ମାରିବା ପାଇଁ ସେ ଋଷିମାନଙ୍କୁ ଡକାଇ ଏକ ପୁତ୍ରେଷ୍ଟି ଯାଗ କରାଇଲେ । ଯାଗ କୁଣ୍ଡରୁ ପୁଅ ଝିଅ ହୋଇ ଯୋଡ଼ାଏ ବାହାରିଲେ । ପୁଅଟି ନାଁ ଧୃଷ୍ଟଦ୍ୟୁମ୍ନ । ସେ ବାହାରିଲା କ୍ଷଣି ଉପରୁ ଶୁଭିଲା, "ଦ୍ରୋଣ ଏହାଙ୍କର ହାତରେ ମରିବେ ।"

ଯେଉଁ ଝିଅଟି ବାହାରିଲା, ସେ ଭାରି ସୁନ୍ଦର । ତାଙ୍କ ନାଁ ଦ୍ରୌପଦୀ । ସେ ବାହାରିଲା ବେଳେ ଶୂନ୍ୟ ବାଣୀ ହେଲା, "ଏହାଙ୍କର ହେତୁ କୌରବମାନେ ମରିବେ ।"

ଦ୍ରୌପଦୀ ଦିନକୁ ଦିନ ବଡ଼ ହେଲେ, ତାଙ୍କ ରୂପ ଗୁଣ ବଢ଼ିଲା । ସେତେବେଳେ ତ ଅର୍ଜୁନଙ୍କ ବୀରପଣିଆ ସବୁଆଡ଼େ ଶୁଣା ଯାଉଥାଏ, ଦ୍ରୁପଦ ଭାବିଥିଲେ, ଝିଅକୁ ଅର୍ଜୁନଙ୍କୁ ବିଭା କରାଇବେ । ମାତ୍ର ଅର୍ଜୁନ ଜତୁଘରେ ପୋଡ଼ି ମରିବାର ଶୁଣା ଯିବାରୁ ସେ ଏକ ସ୍ୱୟମ୍ବର ସଭା କଲେ । କଥା ହେଲା, ଏକ ବଡ଼ ଖମ୍ବ ଉପରେ ଗୋଟେ ମାଛ ରହିବ, ମାଛ ତଳକୁ ଗୋଟେ ଚକ ସବୁବେଳେ ବୁଲୁଥିବ । ଏଣେ ଖମ୍ବ ତଳେ ପାଣି କୁଣ୍ଡଟିଏ ଥିବ । ଯେ ସେ ପାଣି କୁଣ୍ଡରେ ମାଛର ଛାଇ ଦେଖି ଉପରେ ତା

ଆଖିକୁ ଶର ଲକ୍ଷ କରିବ, ଦ୍ରୌପଦୀଙ୍କୁ ସେ ବିଭା ହେବ । ପାଣ୍ଡବ-ମାନେ ଏକଚକ୍ରା ଗାଁରେ ଥିଲାବେଳେ ବ୍ୟାସଦେବ ସେଠାକୁ ଯାଇ ତାଙ୍କୁ ଏ ସବୁ କଥା କହିଦେଇ ଆସିଲେ ।

ଦ୍ରୌପଦୀଙ୍କୁ ପାଇବା ପାଇଁ କେତେ ଆଉ କେତେ ରଜା,ରଜା-ପୁଅ, ବୀର ଆସି ପଞ୍ଚାଳରେ ପହଞ୍ଚିଲେ । ହସ୍ତିନାରୁ ଦୁର୍ଯ୍ୟୋଧନ, କର୍ଣ୍ଣ, ଦ୍ୱାରକାରୁ ଶ୍ରୀକୃଷ୍ଣ, ବଳରାମ ଆସିଥିଲେ । ଶିଶୁପାଳ, ଶଲ୍ୟ ଆଦି ବୀରମାନେ ମଧ୍ୟ ଆସି ପହଞ୍ଚିଲେ । ପନ୍ଦର ଦିନ ଧରି ଉତ୍ସବ ଲାଗିଲା । ପାଣ୍ଡବ ପାଞ୍ଚ ଭାଇ କାହାକୁ ଚିହ୍ନା ନ ଦେଇ ବ୍ରାହ୍ମଣ ବେଶ ପକାଇ, ବ୍ରାହ୍ମଣଙ୍କ ସାଙ୍ଗେ ଆସି ଏକ କୁମ୍ଭାର ଘରେ ବସା କରି ରହିଲେ ।

ଲକ୍ଷବିନ୍ଧା ଦିନ ହେଲା । ସେ ଦିନ ଦ୍ରୌପଦୀ ଭଲ ବେଶ ହୋଇ ଭାଇଙ୍କ ସଙ୍ଗେ ଫୁଲ ମାଳ ଧରି ସଭାକୁ ଆସିଥାନ୍ତି, ଯେ ଲକ୍ଷ ବିନ୍ଧିବ ତା ବେକରେ ମାଳ ଲମ୍ବାଇ ଦେବେ ।

ଜଣ ଜଣ ହୋଇ ରଜାମାନେ ଖମ୍ବ ପାଖକୁ ଗଲେ, ମାତ୍ର କେହି ପାରିଲେ ନାହିଁ । କିଏ ଧନୁଟା ଟେକି ପାରିଲା ନାହିଁ, ଟେକୁ ଟେକୁ କିଏ ମୁହଁ ମାଡ଼ି ପଡ଼ିଗଲା, କାହାକୁ ମାଛଟା ଦିଶିଲା ନାହିଁ, କାହା ମୁଣ୍ଡ ବୁଲେଇ ହେଲା । ଏ ସବୁ କଥା ଦେଖି ସଭାରେ ହସ-ଭୃଷ୍ଟି ହେଲା । ରଜା ଆଉ ବୀରମାନେ କେହି ନ ପାରିବାରୁ ବ୍ରାହ୍ମଣଙ୍କ ସଭାରୁ ଅର୍ଜୁନ ଉଠିଲେ ଲକ୍ଷ ବିନ୍ଧିବାକୁ । ଆରେ ସମସ୍ତେ ତାଙ୍କୁ ଦେଖି ହସିଲେ, "ବ୍ରାହ୍ମଣଟାର କେତେ ଲୋଭ ସେ ?" ମାତ୍ର ସେ ଯିମିତି ଗଲେ ଧନୁଟାକୁ ଧରି ଇମିତି ସଜରେ ଶର ମାରି ଦେଲେ ଯେ, ଠକ୍‌କିନା ଯାଇ ମାଛ ଆଖିରେ ବାଜି ଗଲା । ସମସ୍ତେ "ସାବାସ୍ ବ୍ରାହ୍ମଣ, ସାବାସ୍" କହିଲେ । ଦ୍ରୌପଦୀ ଫୁଲମାଳ ଆଣି

ତାଙ୍କ ବେକରେ ପକାଇ ଦେଲେ । ଭିତରେ ତ କୃଷ୍ଣ ବସିଥିଲେ—ସେ କେବଳ ଜାଣିଲେ, ଏ ଅର୍ଜୁନ ।



ଲକ୍ଷ୍ୟ ବିନ୍ଧା

ଜଣେ ବ୍ରାହ୍ମଣ ଦ୍ରୌପଦୀଙ୍କି ଜିଣି ନେଇ ଯିବାର ଦେଖି ରଜାମାନଙ୍କର ରାଗ ହେଲା । ସେମାନେ ଦ୍ରୁପଦ ରାଜାଙ୍କୁ ମାରିବାକୁ ଘେରି ଗଲେ ! ଏହା ଦେଖି ଭୀମ ଗଛରୁ ଡାଳ ଭାଙ୍ଗି ସେମାନଙ୍କୁ ପଛରୁ ପିଟି ନେଲେ । ଭାରି ଯୁଦ୍ଧ ଲାଗିଲା । ଅର୍ଜୁନ ଆଉ ଭୀମଙ୍କ ଦାଉରେ ରଜାମାନେ ହାରି ପଳାଇଲେ ।

କୁନ୍ତୀ ତ ଏଣେ ଘରେ ଥିଲେ, ସେ ଏ ସବୁ କଥା କିଛୁ ଜାଣନ୍ତି ନାହିଁ । ପୁଅମାନେ ଦ୍ରୌପଦୀଙ୍କି ଧରି ବସାକୁ ଗଲେ । ପଛରୁ ଡାକି କହିଲେ, "ମା, ଆମେ ଗୋଟିଏ ଜିନିଷ ଆଣିଚୁ ।" କୁନ୍ତୀ କହିଲେ, "ଯାହା ଆଣିଛ ବାଣ୍ଟି କରି ନିଅ ।" ମାତ୍ର ସେ ବୁଲି ଦେଖନ୍ତି ତ ସୁଏ ଗୋଟିଏ ବୋହୂ ଆଣିଛନ୍ତି । ସେତେବେଳେ ପୁଅମାନେ ମାଆଙ୍କ କଥାକୁ ଦେଈଙ୍କ ପରି ମାନୁଥିଲେ । ଠିକ୍ ହେଲା ଯେ, ପାଞ୍ଚ ଭାଇଯାକ ମିଶି ଦ୍ରୌପଦୀଙ୍କି ବିଭା ହେବେ ।

ଏଣେ ଦ୍ରୁପଦ ଜାଣି ପାରିଲେ, ଯେ ଲକ୍ଷ ବିନ୍ଧିଛନ୍ତି ସେ ଅର୍ଜୁନ । ସେ ଆଉ ତାଙ୍କ ମା, ଭାଇମାନେ କୁମ୍ଭାର ଶାଳାରେ ବସା କରି ଅଛନ୍ତି । ତହୁଁ ସେ ଭାରି ସନମାନରେ ସମସ୍ତିଙ୍କି ଡାକି ଆଣିଲେ । ଗଡ଼ରେ ବିଭାଘର ହେଲା । ଦ୍ରୁପଦ ପାଞ୍ଚ ଜୋଇଁଙ୍କି ଅନେକ ଧନରତ୍ନ, ହାତୀ, ଘୋଡ଼ା ଯୌତୁକ ଦେଲେ ।

---

## ପାଣ୍ଡବମାନେ ଭାଇଭାଗ ପାଇଲେ

ପାଣ୍ଡବମାନେ ଜୀଇଁଛନ୍ତି ବୋଲି ହସ୍ତିନାରେ ଚହଳ ପଡିଗଲା । ପ୍ରଜାମାନେ ମହା ଖୁସି ହେଲେ । ଭୀଷ୍ମ, ଦ୍ରୋଣ, ବିଦୁର ହେଉଛା

ତାଙ୍କୁ ରାଜ୍ୟରୁ ଅଣି ଭାଇଭାଗ ଦେବାକୁ ଦୁର୍ଯ୍ୟୋଧନଙ୍କୁ କହିଲେ । ଦୁର୍ଯ୍ୟୋଧନଙ୍କର ତ ଖଳ ବୁଦ୍ଧି । ଶକୁନି କଥାରେ ପଡ଼ି ସେ ଆଗ ମଙ୍ଗୁନ ଥିଲେ । ପଛକୁ ମଙ୍ଗିବାରୁ ଧୃତରାଷ୍ଟ୍ର ପାଣ୍ଡବଙ୍କୁ ପଞ୍ଚାଳରୁ ଡକାଇ ଅଣିଲେ । ତା ପରେ ରାଜ୍ୟକୁ ଦୁଇ ଭାଗ କରି ଅଧେ ତାଙ୍କୁ ଦେଲେ ।

ପାଣ୍ଡବମାନେ ଯେଉଁ ଅଧିକ ରାଜ୍ୟ ପାଇଲେ ସେ ଭାରି ଜଙ୍ଗଲ ହୋଇଥିଲା । ତାକୁ ସେ ସଫା କରାଇ ସୁନ୍ଦର ନଅର ତୋଳାଇଲେ । ସ୍ୱର୍ଗର ଇନ୍ଦ୍ରପୁରୀ ପରି ଏହି ଶୋଭା ପାଉଥିବାରୁ ତା ନାଁ ଇନ୍ଦ୍ରପ୍ରସ୍ଥ ଦିଆ ହେଲା । ପାଣ୍ଡବମାନେ ମା ମାଇପଙ୍କୁ ଧରି ସେଠି ବଡ଼ ସୁଖରେ ରହିଲେ ।

ସେ ପାଞ୍ଚ ଭାଇଙ୍କ ଭିତରେ କଥା ହୋଇଥାଏ ଯେ ତାଙ୍କ ଭିତରୁ କିଏ ଜଣେ ଦ୍ରୌପଦୀଙ୍କ ପାଖରେ ଥିଲେ ସେତେବେଳେ ଆଉ କିଏ ସେଠାକୁ ଯିବେ ନାହିଁ । ଗଲେ ବାର ବର୍ଷ ବନବାସ କରି ରହିବେ ।

ଥରେ ଯୁଧିଷ୍ଠିର ଦ୍ରୌପଦୀଙ୍କ ପାଖରେ ଥିବାବେଳେ ଅର୍ଜୁନ ସେ ଘରକୁ ଗୋଟିଏ ହତିଆର ଅଣିବାକୁ ପଶିଗଲେ । ସେହି ଦୋଷରୁ ସେ ବାରବର୍ଷ କାଳ ବନବାସ କରି ଗଲେ । ଏ ବାରବର୍ଷ ଭିତରେ ସେ ଅନେକ ତୀର୍ଥ ବୁଲି ଶେଷକୁ ଶ୍ରୀକୃଷ୍ଣଙ୍କ ପାଖେ ଦ୍ୱାରକାରେ ପହଞ୍ଚିଲେ । ଶ୍ରୀକୃଷ୍ଣଙ୍କର ସୁଭଦ୍ରା ବୋଲି ଗୋଟିଏ ଭଉଣୀ ଥାଏ । ଅର୍ଜୁନ ତାକୁ ସେଇଠି ବିଭା ହେଲେ । ତା ପରେ, ବାର ବର୍ଷ ପୂରିଲାରୁ ସୁଭଦ୍ରା ଶ୍ରୀକୃଷ୍ଣ ଓ ତାଙ୍କ ଭାଇ ବଳରାମଙ୍କୁ ସାଙ୍ଗରେ ଧରି ଇନ୍ଦ୍ରପ୍ରସ୍ଥକୁ ଆସିଲେ ।



# ଖାଣ୍ଡବ ବଣ ପୋଡ଼ା ହେଲା

ଦିନେ ଶ୍ରୀକୃଷ୍ଣ ଆଉ ଅର୍ଜୁନ ସାଙ୍ଗ ହୋଇ ବୁଲୁଥିଲେ, ଅଗ୍ନି ଦେବତା ଗୋଟିଏ ବ୍ରାହ୍ମଣ ବେଶ ଧରି ଆସି କହିଲେ, "ଗୋଟିଏ ଯାଗରେ ବହୁତ ଘିଅ ଖାଇ ମୋର ରୋଗ ହୋଇ ଯାଇଛି । ବ୍ରହ୍ମା କହୁଛନ୍ତି, ଖାଣ୍ଡବ ବଣଟା ଖାଇଲେ ଏ ରୋଗ ଭଲ ହେବ । ମାତ୍ର ଇନ୍ଦ୍ର ଏ ବଣ ଜଗିଛନ୍ତି । ମୁଁ ପାଖ ମାଡ଼ିଲେ ମେଘ ବରଷି ଦେଉଛନ୍ତି । ବ୍ରହ୍ମା କହୁଛନ୍ତି, ଆପଣ ସାହା ହେଲେ ମୁଁ ସେଥିରେ ପଶି ଖାଇବି ।"

ଖାଣ୍ଡବ ଗୋଟିଏ ଭାରି ବଡ଼ ଜଙ୍ଗଲ । ସେଥିରେ ବହୁତ ଜୀବ ଜନ୍ତୁ ଥାନ୍ତି । କୃଷ୍ଣ ଅର୍ଜୁନ ଅଗ୍ନିଙ୍କି କହିଲେ, "ଆମ ପାଖରେ ତ କିଛି ଅସ୍ତ୍ର ଶସ୍ତ୍ର ନାହିଁ । ଯେବେ କା'ଠୁ ଆଣି ଆମକୁ ଦେବ ତେବେ ସାହା ହେବୁ ।" ଅଗ୍ନି ବରୁଣଙ୍କ ପାଖକୁ ଗଲେ । ଅର୍ଜୁନଙ୍କ ପାଇଁ ଗୋଟିଏ ରଥ, ଆଉ ଗାଣ୍ଡିବ ବୋଲି ଗୋଟିଏ ଭଲ ଧନୁ ଆଣିଲେ । ଶ୍ରୀକୃଷ୍ଣଙ୍କ ପାଇଁ ସୁଦର୍ଶନ ଚକ୍ର ଆଉ ଗଦା ଆଣି ଦେଲେ ।

ଏମାନଙ୍କର ବଳରେ ଅଗ୍ନି ଦମ୍ଭ ପାଇଲେ । ସେ ଯାଇ ବଣ ପୋଡ଼ିଲେ । ଇନ୍ଦ୍ର ନିଆଁ ଲିଭାଇବାକୁ ମେଘ ବରଷାଇଲେ, ପର୍ବତ ଫିଙ୍ଗିଲେ । ମାତ୍ର କୃଷ୍ଣ ଅର୍ଜୁନଙ୍କ ଅସ୍ତ୍ର ବଳରେ ତାହା ସବୁ କିଛି ଖାଟିଲା ନାହିଁ । ଅଗ୍ନି ବଣଟାକୁ ଖାଇ ସନ୍ତୁଷ୍ଟ ହେଲେ । ତାଙ୍କ ରୋଗ ଭଲ ହୋଇଗଲା । ଏହି ବଣ ପୋଡ଼ିରେ ଅନେକ ଜୀବଜନ୍ତୁ ମଲେ । କେତେ ମଲେ ତା' ଗଣି କହିହେବ ନାହିଁ । ଏଡ଼େ ବଣକୁ ସମସ୍ତେ ପୋଡ଼ି ଶେଷକୁ ଛଅଟି ପ୍ରାଣୀ ମାତ୍ର ରକ୍ଷା ପାଇଥିଲେ ।

ଅର୍ଜୁନ ତ ଇନ୍ଦ୍ରଙ୍କ ପୁଅ, ତାଙ୍କ ବଳ ଦେଖି ଇନ୍ଦ୍ର ଭାରି ଖୁସି ହେଲେ । କହିଲେ, "ମହାଦେବଙ୍କୁ ସନ୍ତୁଷ୍ଟ କରି ପାରିଲେ ତୁମକୁ ସେ ଭଲ ଭଲ ଅସ୍ତ୍ର ଦେବେ ।"

—————

## ସଭାଘରର ତୋଳା ହେଲା

ଯେଉଁ ଛ'ଜଣ ଖାଣ୍ଡବ ପୋଡ଼ରୁ ଜୀଇଁଥିଲେ ତାଙ୍କ ଭିତରେ ମୟ ବୋଲି ଏକ ଦାନବ ଥିଲେ । ଦାନବଙ୍କ ଭିତରେ ସେ ବଡ଼ କାରିଗର । ସେ ଆସି ଅର୍ଜୁନଙ୍କୁ କହିଲେ, "ଆପଣ ମୋ ଜୀବନ ରଖିଛନ୍ତି, ଆପଣଙ୍କର ମୁଁ କଣ ହେଲେ ଉପକାର କରିଯିବାକୁ ଭାବୁଛି । କହନ୍ତୁ କଣ କରିବି ।"

ଅର୍ଜୁନ କହିଲେ, "ମୋର କିଛି ଲୋଡ଼ା ନାହିଁ । ତୁମେ କୃଷ୍ଣଙ୍କ ପାଇଁ କିଛି କରିଦେଇ ଯାଅ ।"

କୃଷ୍ଣ ମୟଙ୍କୁ କହିଲେ, "ଆଚ୍ଛା, ଯେବେ କହୁଛ, ଯୁଧିଷ୍ଠିରଙ୍କ ପାଇଁ ଗୋଟିଏ ଭଲ ସଭାଘର ତିଆରି କରି ଦିଅ । ଇମିତି ଘର କରିବ ଯେ, ପୃଥିବୀରେ ସେ ଭଳି ଆଉ କେବେ ହୋଇ ନ ଥିବ କି ହେବ ନାହିଁ ।"

ମୟ ଘର ତିଆରିରେ ଲାଗିଲେ । ସେ ଘର କଥା ଲେଖି ବୁଝାଇ ହେବ ନାହିଁ । ଏଡ଼େ ସୁନ୍ଦର ଘର, ଏତେ ମଣି ମାଣିକ୍ୟ, ଏତେ ଚିତ୍ରଦାମର କାନସରେ ତାହା ତୋଳା ହୋଇଥିଲା ଯେ, ଦେବତା ମାନେ ଆଶ୍ଚର୍ଯ୍ୟ ହୋଇ ଦେଖିବାକୁ ଆସିଲେ । ଘରଟି ପାଞ୍ଚ ହଜାର

ହାତ ଲମ୍ବ ହୋଇଥିଲା । ମୟ ସେ ଘରକୁ ଚଉଦ ମାସରେ ସାରିଲେ । ଏ ପର୍ଯ୍ୟନ୍ତ ପୃଥିବୀରେ ସିମିତ ଘର ଆଉ କେହି କରି ପାରି ନାହାନ୍ତି ।

ଘର ତୋଳି ସାରି ମୟ ତାଙ୍କ ରାଜ୍ୟକୁ ଯିବାକୁବାହାରିଲେ । ଗଲାବେଳେ ଖୁସି ହୋଇ ଅର୍ଜୁନଙ୍କୁ ଗୋଟିଏ ଭଲ ଶଙ୍ଖ, ଭୀମଙ୍କୁ ଗୋଟିଏ ଗଦା ଦେଇ ଥିଲେ । ଶଙ୍ଖଟି ନାଁ ଦେବଦତ୍ତ, ଆଉ ଗଦାଟି ନାଁ ବୃଷପର୍ବା । ଏ ଦୁଇଟି ଦକ୍ଷଣ ଦେବତାଙ୍କଠୁ ମୟ ଆଣିଥିଲେ ।

ସଭାଘର ତୋଳା ହେଲା ପରେ ଦିନେ ନାରଦ ମୁନି ସେଠାକୁ ଆସିଲେ । ନାରଦ ଭାରି ଜ୍ଞାନୀ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସବୁଆଡ଼େ ବୁଲନ୍ତି । ପ୍ରଜାଙ୍କୁ ପାଳିବା ବିଷୟରେ ସେ ଯୁଧିଷ୍ଠିରଙ୍କୁ ବହୁତ ହିତ କଥା କହିଲେ । ଚାଲିବେଳକୁ କହି ଗଲେ, "ଜାଣିଲ ଯୁଧିଷ୍ଠିର, ଏପରି ନାହିଁ ନ ଥିବା ଘର ତ ପାଇଚ, ଏବେ ଗୋଟିଏ ରାଜସୂୟ ଯଜ୍ଞ କର । ଏହା ତୁମେ କରି ପାରିଲେ ତୁମ ପିତା ଦେବତାମାନଙ୍କ ସଭାରେ ବସି ପାରିବେ ।"

---

## ଜରାସନ୍ଧ ମଲା

ରାଜସୂୟ ଯାଗ ସହଜ କଥା ନୁହେଁ । ଯେ ଏହା କରେ ସେ ମହାରାଜା ହୋଇଯାଏ । ଭରତ ମହାରାଜା ଆଗେ ଏହା କରିଥିଲେ । ସବୁ ରଜାଙ୍କୁ ଜିଣି ସେମାନଙ୍କଠୁ କର ଆଣି ପାରିଲେ ଏ ଯାଗ ହୁଏ । ଯେ ଜିଣି କରି କର ଆଣନ୍ତି, ରଜାମାନେ ତାଙ୍କ ସଭାକୁ ଆସି ସଲାମି ଦେଇ ଯାନ୍ତି ।

ଯୁଧିଷ୍ଠିରଙ୍କର ଯାଗ କରିବାକୁ ସାହସ ଖଟିଲା ନାହିଁ । ମାତ୍ର ବିଚାରିଲେ ଭୀମ ଅର୍ଜୁନଙ୍କ ପରି ଭାଇ, ଆଉ କୃଷ୍ଣଙ୍କ ପରି ବନ୍ଧୁ ଥାଉ ଥାଉ ଏ ଯାଗ କରିବା କିଛି କଷ୍ଟ ନୁହେ ।

ଶ୍ରୀକୃଷ୍ଣ ମଥୁରାରେ ଥିଲେ । ଯୁଧିଷ୍ଠିର ଲୋକ ପଠାଇ ତାଙ୍କୁ ଡକାଇ ଆଣିଲେ । ପାଞ୍ଚଭାଇ ଆଉ ଶ୍ରୀକୃଷ୍ଣଙ୍କ ଭିତରେ ଯାଗ କରିବା ବିଷୟରେ ବହୁତ ବିଚାର ପଡ଼ିଲା । ଶ୍ରୀକୃଷ୍ଣ କହିଲେ, "ସବୁ ହେବ, ମାତ୍ର ମଗଧ ରଜା ଜରାସନ୍ଧକୁ ଜିଣିବା ସହଜ ନୁହେ । ସେ ଭାରି ବୀର । ସେ ଏକ ଯାଗ କରୁଛି ଯେ, ସେଥିରେ ଶହେ ରଜାଙ୍କୁ ବଳି ପକାଇବ । ଏବେ ଚଉରାଅଶୀ ଜଣ ରଜାଙ୍କୁ ଆଣି ଘରେ ବନ୍ଦୀ କରି ରଖିଛି । ତାକୁ ଆଗ ମାରିଲେ ପରେ ଆଉ କଥା ବିଚାର କରିବା ।

କଥା ହେଲା ଯେ ଜରାସନ୍ଧ ସାଙ୍ଗେ ଲଢ଼ିବା ପାଇଁ ଭୀମ ଓ ଅର୍ଜୁନ ମଗଧ ଯିବେ । ତାଙ୍କ ସଙ୍ଗେ ଶ୍ରୀକୃଷ୍ଣ ଥିବେ ।

ଶ୍ରୀକୃଷ୍ଣ ତ କେତେ ଉପାୟ ଜାଣନ୍ତି, ସୈନ୍ୟ ସାମନ୍ତ ନେଇ ମଗଧ ଗଲେ । ଜରାସନ୍ଧକୁ ପାରି ହେବନାହିଁ ବିଚାରି ତିନିହେଁ ବ୍ରାହ୍ମଣ ବେଶ ପକାଇଲେ । ତିନିଜଣ ଯାକ ଯାଇ ମଗଧରେ ମହା ଉପଦ୍ରବ ଆରମ୍ଭ କଲେ,—ଦୋକାନ ପସରା ଲୁଟି କଲେ, ରଜାଙ୍କ ଲୋକଙ୍କୁ ମାରିଲେ, ଜିନିଷ ଛଡ଼ାଇ ନେଲେ, ପାଚିରି ଡେଇଁ ନଅର ଭିତରେ ପଶିଲେ ।

ଜରାସନ୍ଧ ବ୍ରାହ୍ମଣମାନଙ୍କୁ ଭାରି ଭକ୍ତି କରେ । ସେ ଆଦରରେ ଏମାନଙ୍କୁ ଡକାଇବାରୁ ଏମାନେ କହିଲେ, "ଆମେ ଯାଇ ପାରିବୁ ନାହିଁ । ତୁମେ ରାତିରେ ଆମ ପାଖକୁ ଆସିଲେ ଦେଖା ହେବ ।"



ଭୀମ ଓ ଜରାସନ୍ଧ

ଜରାସନ୍ଧ ସେହି ରାତିରେ ଗଲା । ସେ ଭକ୍ତିରେ ବ୍ରାହ୍ମଣଙ୍କ କୁଶଳ କଥା ପଚାରୁଛି ପଚାରୁଛି ଏମାନେ ତାଙ୍କୁ ଧମକାଇ କହିଲେ, "ତୁମେ ରାଜ୍ୟରେ ବଡ଼ ଅନ୍ୟାୟ କରୁଛ ।"

ଜରାସନ୍ଧ ଦେଖିଲା, ଏମାନେ ବ୍ରାହ୍ମଣଙ୍କ ପରି ଦିଶୁ ନାହାନ୍ତି କି ବ୍ରାହ୍ମଣଙ୍କ ପରି କଥା ବାର୍ତ୍ତା କରୁନାହାନ୍ତି । ତା ମନରେ ସନ୍ଦେହ ହେଲା । କହିଲା, 'ତୁମେମାନେ ତ ବ୍ରାହ୍ମଣ ପରି ଦିଶୁ ନାହିଁ । କ୍ଷତ୍ରିୟ ପରି ଦିଶୁଛ । କିଏ ତୁମେ ଚିହ୍ନାଇ କହ ।'

ଶ୍ରୀକୃଷ୍ଣ ନିଜ ପରିଚୟ ଦେଇ କହିଲେ, "ତୁମେ ଏତେ ରଜାଙ୍କୁ ମାରିବାକୁ ବନ୍ଦୀ କରିଛ । ସମସ୍ତଙ୍କୁ ଛାଡ଼ିଦିଅ, ନ ହେଲେ ଆମ ସଙ୍ଗେ ଯୁଦ୍ଧ କର ।"

ଜରାସନ୍ଧ ଭାରି ବୀର । ସେ ଜାଣିଲା, ଭୀମ ଅର୍ଜୁନ କପଟରେ ଆସିଛନ୍ତି । ମନେ ମନେ ରାଗି ଯୁଦ୍ଧକୁ ସଜ ହେଲା । ଭୀମଙ୍କର ତା'ର ଲଢ଼େଇ ଆରମ୍ଭ ହେଲା । ଦୁହିଁଙ୍କ ଭିତରେ ଚଉଦ ଦିନ ଯାଏ ଲଢ଼େଇ ଲାଗିଲା । ଶେଷକୁ ଭୀମ ତା' ଦି' ଗୋଡ଼ ଧରି ଚିରି ମାରି ଦେଲେ ।

ଜରାସନ୍ଧର ଜନ୍ମ ସମ୍ବନ୍ଧରେ ଗୋଟିଏ କଥା ଅଛି । ତା' ବାପାର ଦୁଇ ରାଣୀଙ୍କଠୁ ଦି'ଫାଳ ହୋଇ ସେ ଜନ୍ମ ହୋଇଥିଲା । ଜରା ବୋଲି ଏକ ଅସୁରୁଣୀ ଦି'ଫାଳ ଯାକ ଯୋଡ଼ି ତାକୁ ଜୀଆଁଇ ଥିବାରୁ ତା' ନାଁ ଜରାସନ୍ଧ ହେଲା ।

---

## ପାଣ୍ଡବମାନେ ସବୁ ଦେଶ ଜିଣିଲେ

ଜରାସନ୍ଧ ମଲାରୁ ବନ୍ଦୀ ରଜାମାନେ ଖଲାସ ହେଲେ । ସେମାନେ ସମସ୍ତେ ଯୁଧିଷ୍ଠିରଙ୍କ ଯାଗକୁ ଯିବେ ବୋଲି ହଁ କଲେ । ଜରାସନ୍ଧର ପୁଅ ସହଦେବଙ୍କୁ ମଗଧରେ ରଜା କରାଇଦେଇ ଶ୍ରୀକୃଷ୍ଣ, ଭୀମ, ଅର୍ଜୁନ ଇନ୍ଦ୍ରପ୍ରସ୍ଥକୁ ଫେରି ଆସିଲେ ।

ଏହା ପରେ ଆଉ ରଜାମାନଙ୍କୁ ଜିଣିବା ପାଇଁ ଭୀମ ପୂର୍ବ ଦିଗକୁ, ଅର୍ଜୁନ ଉତ୍ତର ଦିଗକୁ, ନକୁଳ ପଶ୍ଚିମ ଦିଗକୁ ଏବଂ ସହଦେବ ଦକ୍ଷିଣ ଦିଗକୁ ଗଲେ । ସାଙ୍ଗରେ ସମସ୍ତେ ଅନେକ ସୈନ୍ୟ ନେଇ ଥିଲେ ।

ଅର୍ଜୁନ ଅନେକ ଯୁଦ୍ଧରେ ଜିଣିଲେ । ସେ ଦେଶ ଜିଣି ଜିଣି ହିମାଳୟ ପର୍ବତ ଆରପାଖ ଯାଏ ଯାଇଥିଲେ । ଫେରିଲା ବେଳେ ଅନେକ ଧନରତ୍ନ, ଲୁଗାପଟା ଆଣିଥିଲେ ।

ଭୀମ ଗଲେ ଯେ ପଞ୍ଚାଳ, କୋଶଳ, ଅଙ୍ଗ ରାଜ୍ୟମାନ ଜିଣି ଶଗଡ଼ ଶଗଡ଼ ସୁନା ରୁପା, ମଣିମୁକ୍ତା ବୋହି ଆଣିଲେ । କେହି ରଜା ତାଙ୍କୁ ହଟାଇ ପାରିଲେ ନାହିଁ ।

ନକୁଳ ସହଦେବ କୁଶଳରେ ରାଜ୍ୟ ଜିଣି ଫେରି ଆସିଲେ । ସହଦେବ କିଷ୍କିନ୍ଧ୍ୟା ମୁଲକରେ ମାଙ୍କଡ଼ ରଜା ସଙ୍ଗେ ଲଢ଼େଇ କରି ଲଙ୍କାକୁ ଯାଇଥିଲେ ।

ଏହିପରି ସବୁ ଦେଶ ଜିଣା ହେଲା ।

# ଶିଶୁପାଳର ଗର୍ବ ଭାଙ୍ଗିଲା

ଯାଗ ଦିନ ପାଖେଇଲା । ସବୁ ଦେଶର ରଜାମାନେ ଆସି ଇନ୍ଦ୍ରପ୍ରସ୍ଥରେ ଜମା ହେଲେ । ସମସ୍ତେ ଧନ ରତ୍ନ, ମଣି ମାଣିକ୍ୟ ଆଣି ଯୁଧିଷ୍ଠିରଙ୍କ ପାଦତଳେ ଉପହାର ଦେଲେ । ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ର, ବିଦୁର ଆଉ ଦୁର୍ଯ୍ୟୋଧନ ହେଉଥିବା ଶହେ ଭାଇ ସମସ୍ତେ ଇନ୍ଦ୍ରପ୍ରସ୍ଥକୁ ଆସିଥିଲେ । ଏତେ ଉତ୍ସବ ଲାଗିଥାଏ, ହେଲେ, ଦୁର୍ଯ୍ୟୋଧନଙ୍କ ମନକୁ କିଛି ପାଉ ନଥାଏ । ସେ ତ ପିଲା ଦିନୁ ପାଣ୍ଡବଙ୍କୁ ଭଲ ପାନ୍ତି ନାହିଁ, ତାଙ୍କ ବଡ଼ତି ଦେଖି ଦେଖି ଦେହ ସହନ୍ତା କିମିତି ? ସେ ସବୁ କଥା ଦେଖି ଗୁମ୍ ମାରି ଥାନ୍ତି ।

ଉତ୍ସବ ଦିନ କିଏ କିମିତି କରିବାକୁ ହେବ ଭୀଷ୍ମ ଦ୍ରୋଣ ଉଭୟ ସବୁ ଦେଖାଇ ଦେଉଥାନ୍ତି । ଶ୍ରୀକୃଷ୍ଣ ବ୍ରାହ୍ମଣମାନଙ୍କ ଗୋଡ଼ ଧୋଇ ଦେଉଥାନ୍ତି । ଦୁର୍ଯ୍ୟୋଧନଙ୍କ ଠାରେ ଉପହାର ରଖିବା ଭାର ଥାଏ । ଦୁଃଶାସନ ଭଣ୍ଡାର ଘର ଜଗିବା ରଖିଥାଏ । ଇମିତି ସମସ୍ତେ ଗୋଟିଏ ଗୋଟିଏ କାମ କରୁଥାନ୍ତି । ଗରିବ ଓ ଅତିଥିମାନଙ୍କୁ ଯୁଧିଷ୍ଠିର ନିଜେ ଧନରତ୍ନ ବାଣ୍ଟି ମହା ଖୁସି ହେଉଥାନ୍ତି ।

ଶୁଭରେ ଯାଗ ସରିଲା । ଶେଷକୁ ଅର୍ଘ୍ୟ ଦିଆ ହେବା କଥା । ଭୀଷ୍ମ ଯୁଧିଷ୍ଠିରଙ୍କୁ ଡାକି କହିଲେ, "ବାବୁ, ସବୁ ରଜାଙ୍କୁ ଗୋଟିଏ ଗୋଟିଏ ଅର୍ଘ୍ୟ ଦିଅ, ଆଉ ଶ୍ରୀକୃଷ୍ଣ ତ ସମସ୍ତଙ୍କ ଠାରୁ ବଡ଼, ତାଙ୍କୁ ଆଉ ଗୋଟିଏ ଅଧିକା ଦିଅ ।" ଭୀଷ୍ମଙ୍କ କଥା ଅନୁସାରେ ଶ୍ରୀକୃଷ୍ଣ ଗୋଟିଏ ଅଧିକା ଅର୍ଘ୍ୟ ପାଇଲେ ।

ଚେଦି ଦେଶର ରଜା ଶିଶୁପାଳ ଶ୍ରୀକୃଷ୍ଣଙ୍କ ପିଉସୀ ପୁଅ ଭାଇ । ସେ ବଳୁଆ ବୋଲି ଭାରି ଗର୍ବ କରେ । ଶ୍ରୀକୃଷ୍ଣଙ୍କୁ ସେ ବାଲ୍ୟ

ପ୍ରମାଣେ ଖାତିର କରେ ନାହିଁ । ଯେତେବେଳେ ସଭା ଭିତରେ ଶ୍ରୀକୃଷ୍ଣଙ୍କୁ ଯୋଡ଼ଏ ଅର୍ଘ୍ୟ ଦିଆଗଲା, ଶିଶୁପାଳର ଦେହ ସହିଲା ନାହିଁ । ସେ ସଭାରୁ ଉଠି ତାଙ୍କୁ ଯେଉଁଆ ତା' ଗାଳି ଦେଲା । ଆଉ କେତେ ରଜା ମଧ୍ୟ ତା' ସାଙ୍ଗେ ମିଶିଲେ । ଶ୍ରୀକୃଷ୍ଣଙ୍କୁ ମାରିବେ ବୋଲି ବାହାରିଲେ । ଶିଶୁପାଳର ବେଶି ଉତ୍ପାତ ଦେଖି କୃଷ୍ଣ ଆଉ ସମ୍ଭାଳି ପାରିଲେ ନାହିଁ । ସେ ଇଙ୍ଗିତ ଦେଲାରୁ କୁଆଡ଼ୁ ସୁଦର୍ଶନ ଚକ୍ର ଆସି ତାଙ୍କ ହାତରେ ଥୁଆ ହୋଇ ଗଲା । ସେ ତାକୁ ବୁଲାଇ ବୁଲାଇ ଛାଡ଼ିଦେଲେ । ଶିଶୁପାଳର ମୁଣ୍ଡ ବେକରୁ ଛିଡ଼ି ତଳେ ପଡ଼ିଗଲା । ସମସ୍ତେ ଭୟରେ କାଠ ପରି ହୋଇ ଗଲେ । ଆଉ କିଛି ଗୋଳମାଳ ହେଲା ନାହିଁ । ରଜାମାନେ ଯେଝା ରାଜ୍ୟକୁ ଫେରିଗଲେ ।

---

## ଶକୁନିର ବୁଦ୍ଧି

ଯାଗ ସରିଲାରୁ ସମସ୍ତେ ତ ଯେଝା ଘରକୁ ଗଲେ, ଗହଳି ଭାଙ୍ଗିଲା; ମାତ୍ର ଦୁର୍ଯ୍ୟୋଧନ ପାଣ୍ଡବଙ୍କ ରାଜସଭା ଭଲକରି ଦେଖିବା ପାଇଁ ତାଙ୍କ ନଅରରେ ଆଉ କେତେ ଦିନ ରହିଲେ । ସାଙ୍ଗରେ ମାମୁଁ ଶକୁନି ପରି କପଟୀ ଆଉ ଠକ ଏ ମହୀ ମଣ୍ଡଳରେ କିଏ ନଥିବେ । ଇନ୍ଦ୍ରପୁରୀ ପରି ପାଣ୍ଡବଙ୍କ ସଭା ଦେଖି ଖଳ ଦୁର୍ଯ୍ୟୋଧନଙ୍କ ମନରେ ଭାରି ହିଂସା ହେଲା, ସେ ସେମିତି ଘର କେବେ ଦେଖି ନଥିଲେ । ତାଙ୍କୁ ସବୁ ସ୍ୱପ୍ନ ଦେଖିଲା ପରି ଲାଗିଲା । ଥରେ ସେ କାଚ ବାଡ଼କୁ ଦୁଆର ଭାବି ମେଣ୍ଟେଇ ହୋଇ ମୁହଁଟା ମାଡ଼ି ପଡ଼ିଲେ । ଲୋକେ ଟୋ' ଟୋ' ହସିଲେ । ଆଉ ଠାଏ ଦି'ଠା ମଧ୍ୟ ଏହିପରି ଲୋକହସା ହେଲେ । ହେଲେ, କାହାକୁ କଣ କହିବେ ? ଯାହାକୁ ମାରିବା ପାଇଁ

ସେ ବିଷ ଲଡୁ ଦେଲେ, ଜଉ ଘର ପୋଡ଼ିଲେ ତାଙ୍କ ଶ୍ରୀ ଦେଖି ସେ ସହିବେ କିମିତି ?

ମାମୁ ଭଣଜା ମନ ଦୁଃଖ କଥା ମାମୁ ଶକୁନି ଜାଣିଲା। ହସ୍ତିନା ନଗରୁ ସେ ଦୁର୍ଯ୍ୟୋଧନଙ୍କୁ କହିଲା, "ବାବୁ, ମନ ଦୁଃଖ କରନା। ମୁଁ ଉପାୟ ଜାଣେ। ପଶା ଖେଳରେ ତାଙ୍କୁ ଠକି ଦେବ।"

ମାମୁ କଥା ଶୁଣି ଦୁର୍ଯ୍ୟୋଧନ ଭାରି ଖୁସି ହେଲେ। କହିଲେ, "ମାମୁ, ଏ ପାଣ୍ଡବଙ୍କୁ ନ ଠକିଲେ ମୁଁ ଜୀବନ ଧରି ରହିବି ନାହିଁ।"

ଶକୁନି ଦିନେ ସଭା ଭିତ୍ରି ଯାଇ ଦୁର୍ଯ୍ୟୋଧନ ମନ ଦୁଃଖ ହେବା କଥା ଧୃତରାଷ୍ଟ୍ରଙ୍କୁ କହିଲା। ପଶା ଖେଳରେ ସେ କିପରି ପାଣ୍ଡବଙ୍କୁ ହରାଇ ଦେବ ବୋଲି ଜଣାଇ ଦେଲା।

ଧୃତରାଷ୍ଟ୍ର ଆଗ ଆଗ ଶକୁନି କଥାକୁ ରାଜି ହୋଇ ନ ଥିଲେ। ଶେଷକୁ ପୁଅ ମନ ଦୁଃଖ କଥା ଶୁଣି ମଙ୍ଗିଲେ। ପଶା ଖେଳ ହେବା ପାଇଁ ଗୋଟିଏ ଭାରି ବଡ଼ ଘର ତିଆରି ହେଲା।

---

## ଯୁଧିଷ୍ଠିର ସବୁ ହାରିଲେ

ଦିନେ ଧୃତରାଷ୍ଟ୍ର ବିଦୁରଙ୍କୁ ଡାକି କହିଲେ, "ପିଲେ କହୁଛନ୍ତି ଯୁଧିଷ୍ଠିର ସାଙ୍ଗେ ପଶା ଖେଳିବେ। ତୁମେ ଯାଇ ତାଙ୍କୁ ଡାକି ଆଣ।"

ବିଦୁର ମନକୁ ପାପ ଛୁଇଁଲା। ଭାବିଲେ, ଏଥିରେ କିଛି ଅନିଷ୍ଟ କଥା ଅଛି। ଏପରି ଅନ୍ୟାୟ ଖେଳ ନ ଖେଳିବାକୁ ବୁଝାଇ ସେ ଧୃତରାଷ୍ଟ୍ରଙ୍କୁ ବହୁତ ମନା କଲେ। ମନା ନ ମାନିବାରୁ ବାଧ୍ୟ ହୋଇ ଯୁଧିଷ୍ଠିରଙ୍କ ପାଖକୁ ଗଲେ।

ବିଦୁରଙ୍କ କଥାରୁ ଯୁଧିଷ୍ଠିର ଜାଣି ପାରିଲେ ଯେ, କୌରବ--ମାନେ ହିଂସାରେ ଖେଳିବାକୁ ଡାକିଛନ୍ତି । କ୍ଷତ୍ରିୟ ହୋଇ ପଶା ଖେଳିବାକୁ ପଛେଇବା ଧର୍ମ ନୁହେଁ । ତାହାଙ୍କ ସେ ଚାରି ଭାଇ, ମାଆ, ଆଉ ଦ୍ରୌପଦୀଙ୍କି ଧରି ହସ୍ତିନା ଗଲେ ।

ଖେଳ ଦେଖିବାକୁ ଅନେକ ଲୋକ ଆସି ଜମା ହେଲେ । ଯୁଧିଷ୍ଠିର ପାଖକେ ରହିଲେ । ଦୁର୍ଯ୍ୟୋଧନ କହିଲେ, "ମୋପାଇଁ ମୋ ମାମୁ ଖେଳିବେ ।" ଶକୁନି ମୁରୁକି ହସା ଦେଇ ଦେଇ ଆସି ଆଗରେ ବସିଲା ।

ଯୁଧିଷ୍ଠିର ଆଗ ଆପଣା ହାରକୁ ପଣ (ବାଜି) ରଖି ଖେଳିଲେ । ମାତ୍ର ଥରକେ ଶକୁନି ତାହା ଜିଣି ନେଲା । ତା'ପରେ ଧନ ରତ୍ନ ଭଣ୍ଡାର ପଣ ବସିଲେ । ସେତକ ମଧ୍ୟ ଗଲା । କ୍ରମେ କ୍ରମେ ହାତୀ ଘୋଡ଼ା, ରାଜ୍ୟ, ଦାସ ଦାସୀ ସବୁ ଗଲେ । ଖେଳ ବେଳକୁ ବେଳ ଘମା ଘୋଟ ହୋଇ ଚାଲିଲା । ଯୁଧିଷ୍ଠିର ଏଡ଼େ ଧାର୍ମିକ ହୋଇ ଖେଳ ମୋହ ଛାଡ଼ି ପାରିଲେ ନାହିଁ । ସମସ୍ତ ସରିବାରୁ ଜଣ ଜଣ ଭାଇଙ୍କି ପଣ ବସାଇ ହାରିଲେ । ଏ କଥା ଦେଖି କୌରବ--ମାନେ ଖୁସି ହେଉଥାନ୍ତି । ଭୀଷ୍ମ, ଦ୍ରୋଣ, ବିଦୁର ହେରିକା ଲାଜରେ, ଦୁଃଖରେ ମୁଣ୍ଡ ପୋତି ବସି ଥାନ୍ତି ।

ଶେଷକୁ ସବୁ ଯେତେବେଳେ ସରିଲା । ଯୁଧିଷ୍ଠିର କହିଲେ, "ହେଉ ମୁଁ ଦ୍ରୌପଦୀଙ୍କି ପଣ କଲି ।" ଏଥର ମଧ୍ୟ ଶକୁନି ଜିଣିଲା । ପାଣ୍ଡବ ମାନେ କାନ୍ଦ କାନ୍ଦ ହୋଇଗଲେ । ଧନ ରତ୍ନ ରାଜ୍ୟ ଭାଇ ଭାର୍ଯ୍ୟାଙ୍କୁ ହରାଇ ଯୁଧିଷ୍ଠିର ମୁହଁ ପୋତି ବସିଲେ ।

---

# ଦ୍ରୌପଦୀ ଅପମାନ ପାଇଲେ

ଏତିକି ବେଳେ ଦୁର୍ଯୋଧନଙ୍କ ପାଳି ପଡ଼ିଲା । ସେତେ-ବେଳର କୌରବମାନଙ୍କ ହସ, ଥଟ୍ଟା କଥା କହି ହେବ ନାହିଁ । ଦୁର୍ଯ୍ୟୋଧନ କହିଲେ, "ଆମେ ଦ୍ରୌପଦୀଙ୍କି ଜିଣିଛୁ, ତାଙ୍କୁ ସଭାକୁ ଅଣ ।" ଏହା କହି ସେ ଦୁ' ଥର ଗୁଳକରକୁ ପଠାଇଲେ । ଶେଷକୁ ଦୁଃଶାସନ ଗଲା । ଦ୍ରୌପଦୀ ନଅର ଭିତରେ ଥିଲେ । ସେ କେତେ ବିକଳ ହେଲେ, କେତେ କାନ୍ଦିଲେ । କହିଲେ, "ତୁମ ଧର୍ମ ହେବ, ମତେ ସଭାକୁ ନଅ ନା"; ଦୁଃଶାସନ କିଛି ଶୁଣିଲା ନାହିଁ । ଦ୍ରୌପଦୀଙ୍କ ବାଳ ଧରି ଟେକି ଆଣି ସଭାରେ ଠିଆ କରି ଦେଲା ।

ଭୀଷ୍ମ, ଦ୍ରୋଣ, ବିଦୁର, ଧୃତରାଷ୍ଟ୍ର ହେଉଚ୍ଛି ଗୁରୁଜନମାନେ ସଭାରେ ବସିଥିଲେ । ସେମାନେ ଦୁର୍ଯ୍ୟୋଧନ ଉପରେ କିଛି କଥା କହିଲେ ନାହିଁ । ମୁହିଁ ପୋତି ଦେଲେ ।

ଦ୍ରୌପଦୀଙ୍କ ଅପମାନ ଦେଖି ଭୀମ ରାଗରେ ନାଗ ସାପ ପରି ଫଁ ଫଁ ହୋଇ କହିଲେ, "ଜାଣ ସମସ୍ତେ, ମୁଁ ପ୍ରତିଜ୍ଞା କଲି, ଦୁଃଶାସନର ବୁକୁ ଚିରି ରକ୍ତ ପିଇବି; ଏହା ନ କଲେ ମୋ ନାଁ ଭୀମ ନୁହେ ।"

ଏକଥା ଶୁଣି କର୍ଣ୍ଣ ଦୁର୍ଯ୍ୟୋଧନ ଥଟ୍ଟା କରି ହସିଲେ । ଏତିକିରେ ସେମାନଙ୍କ ମନ ବୋଧ ହେଲା ନାହିଁ । ସଭାରେ ଗୁରୁଜନମାନେ ବସିଥିଲେ; ଦୁଷ୍ଟ ଦୁଃଶାସନ କର୍ଣ୍ଣ କଥାରେ ପଡ଼ି ଦ୍ରୌପଦୀଙ୍କି ଲଙ୍ଗଳା କରି ତାଙ୍କ ଲୁଗା ଖଣ୍ଡିକ କାଢ଼ି ନେବି ବୋଲି ବସିଲା । ଦୁର୍ଯ୍ୟୋଧନ ଏ କଥା ଦେଖି ହସୁଥାନ୍ତି । ତାଙ୍କୁ ସୁଖ ଲାଗୁ ଥାଏ । ଭୀଷ୍ମ, ଦ୍ରୋଣ, ବିଦୁର ମୁହଁରେ ଲୁଗା ଦେଇ ବସିଲେ । ଦ୍ରୌପଦୀ ବିକଳରେ ଭଗବାନଙ୍କୁ ଡାକୁଥାନ୍ତି । ଦୟାମୟ ଭଗବାନ



ଦ୍ରୌପଦୀ ବସ୍ତ୍ର ହରଣ

ଦୁଃଖିନୀ ଗୁହାରି ଶୁଣିଲେ । ଦୁଃଶା ତାଙ୍କ ଦେହରୁ ଖଣ୍ଡେ ଲୁଗା ଛାଡ଼ିଲାରୁ ଆଉ ଖଣ୍ଡେ ଦଶିଲା । ସେ ଖଣ୍ଡେ ଭିଡ଼ିଲାରୁ ତା ତଳେ

ଆଉ ଖଣ୍ଡେ । ସେ ଯେତିକି ଭିଡ଼ିଲା ତା ଠଳକୁ ତା ଠଳକୁ ଅଜସ୍ର ଅଜସ୍ର ବାହାରିଲା । ସମସ୍ତେ ଏହା ଦେଖି ଆଶ୍ଚର୍ଯ୍ୟ ହୋଇ ଗଲେ । ଲୁଗା ଭିଡ଼ି ଭିଡ଼ି ଦୁଃଶାସନ ହାଲିଆ ହୋଇ ରହିଗଲା । ତେବେବି ହେଲେ ଦୁର୍ଯ୍ୟୋଧନଙ୍କୁ ଭଲ ବୁଦ୍ଧି ଦିଶିଲା ନାହିଁ । ସେ ବାଁ ଜଙ୍ଘରୁ ଲୁଗା କାଢ଼ି ଦ୍ରୌପଦୀଙ୍କି ବସିବାକୁ ଡାକିଲେ । ଭୀମ ଆଉ ସହି ପାରିଲେ ନାହିଁ । ମେଘ ଘଡ଼ଘଡ଼ି ପରି ପାଟିକରି କହିଲେ, "ଗଦାରେ ପିଟି ତୋର ସେଇ ବାଁ ଜଙ୍ଘ ଭାଙ୍ଗିଲେ ମୋ ରାଗ ଯିବ, ଦୁର୍ଯ୍ୟୋଧନ ।" ଏ କଥା ଶୁଣି ସମସ୍ତଙ୍କ ମନରେ ଭୟ ହୋଇ ଗଲା । ଗଛରେ ପେଚା ବୋବେଇଲେ, ବିଲରେ ବିଲୁଆ ଡାକିଲେ, ସମସ୍ତେ ବୁଝିଲେ କୁରୁ ବଂଶକୁ ନଷ୍ଟଯୁ ଅଧର୍ମ ଘୋଟି ଆସିଲା ।

ବୁଢ଼ା ଧୃତରାଷ୍ଟ୍ର ସଭାରେ ତୁନି ହୋଇ ବସି ସବୁ ଶୁଣୁ ଥିଲେ । ସେ ଥାଇ ତାଙ୍କ ପୁଅମାନେ ଏତେ ଏତେ ଅପକର୍ମ କରୁଛନ୍ତି ବୋଲି ସମସ୍ତେ ତାଙ୍କୁ ନିନ୍ଦା କରିବାରୁ ସେ ଦ୍ରୌପଦୀଙ୍କି ଡାକି କହିଲେ, "ମା, ଯାହା ତ ହେବାର ହେଲାଣି । ଏବେ ସେ ସବୁ କଥା ମନରୁ ପାଶୋର । ତୁମର କଣ ଲୋଡ଼ା କହ ।"

ଦ୍ରୌପଦୀ କହିଲେ, "ଯେବେ ତୁମର ଦୟା ହେଉଛି, ମୋ ସ୍ୱାମିମାନଙ୍କୁ ଅସ୍ତ୍ର ଶସ୍ତ୍ର ଫେରାଇ ଦେଇ ଛାଡ଼ି ଦିଅ ।" ଧୃତରାଷ୍ଟ୍ର ଏଥିକି ହଁ କଲେ । ତା ପରେ ଯୁଧିଷ୍ଠିରଙ୍କୁ ଡାକି କହିଲେ, "ବାବୁ, ତୁମେ ମୋ କୁଳର ବଡ଼ ପୁଅ । ଗଲା କଥା ଛାଡ଼ । ଏବେ ତୁମେ ରାଜ୍ୟ ନେଇ ସୁଖରେ ରହ ।"

ଏ କଥା ଶୁଣି ପାଣ୍ଡବମାନେ ତାଙ୍କୁ ନମସ୍କାର କରି ବିଦାୟ ନେଇ ଆସିଲେ ।

---

# ପାଣ୍ଡବମାନେ ବନବାସ କଲେ

ଧୃତରାଷ୍ଟ୍ର ପାଣ୍ଡବମାନଙ୍କୁ ରାଜ୍ୟ ସମ୍ପତ୍ତି ଫେରାଇ ଦେବାରୁ ଦୁର୍ଯ୍ୟୋଧନଙ୍କ ମନରେ ଭାରି ରାଗ ହେଲା । ସେମାନେ କେତେ କଷ୍ଟରେ ତାଙ୍କୁ ଜିଣିଥିଲେ । ଦୁର୍ଯ୍ୟୋଧନ, କର୍ଣ୍ଣ ସାଙ୍ଗ ହୋଇ ପୁଣି ବୁଢ଼ାକୁ ମତାଇଲେ । ଧୃତରାଷ୍ଟ୍ର ତାଙ୍କ ବୋଲରେ ପଡ଼ି ଆଉ ଥରେ ପଶା ଖେଳିବା ପାଇଁ ପାଣ୍ଡବମାନଙ୍କୁ ଡକାଇ ଆଣିଲେ । ଭୀଷ୍ମ, ଦ୍ରୋଣ ପ୍ରଭୃତି ଏ ସବୁ କଥା ଶୁଣି କୁଳକୁ ଅଧର୍ମ ଘୋଟିଲା ବୋଲି ଜାଣୁଥାନ୍ତି ।

ପଶା ଖେଳିବାକୁ ଡାକିଲେ କ୍ଷତ୍ରିୟମାନେ ନାହିଁ କରିବେ ନାହିଁ । ନାହିଁ କରିବା ତାଙ୍କ ଅଧର୍ମ । ଯୁଧିଷ୍ଠିର ଖେଳିବାକୁ ଅସିଲେ । ଏଥର କଥା ହେଲା, ଯେ ହାରିବ ସେ ତେର ବର୍ଷ ବନବାସ କରିବ, ଏହି ତେର ବର୍ଷ ଭିତରୁ ଶେଷ ବର୍ଷକ ଲୁଚି କରି ରହିବାକୁ ହେବ । ସେ ବର୍ଷ ଧରା ପଡ଼ିଲେ ଆଉ ବାର ବର୍ଷ ବନବାସ କରିବାକୁ ହେବ ।

ଯୁଧିଷ୍ଠିର ଶକୁନିର ଛନ୍ଦ କପଟରେ ପଶି ପାରିବା ଲୋକ ନୁହନ୍ତି । ଖେଳ ବସିଲେ । ଏ ଥର ମଧ୍ୟ ହାରିଲେ । ପଞ୍ଚ ପାଣ୍ଡବ ଆଉ ଦ୍ରୌପଦୀ ବଣକୁ ଯିବା କଥା ହେଲା । ସେ ସମସ୍ତେ ଯାଇ ଭୀଷ୍ମ, ଦ୍ରୋଣ, ବିଦୁରଙ୍କ ପାଖରୁ କାନ୍ଦି କାନ୍ଦି ବିଦାୟ ନେଇ ଅସିଲେ । ବିଦୁରଙ୍କ କଥା ମାନି ସେମାନେ ମାଆ କୁନ୍ତୀଙ୍କି ତାଙ୍କ ଘରେ ରଖାଇ ଦେଲେ । ପାଞ୍ଚ ଭାଇଯାକ ଜଟା ବକଳ ପିନ୍ଧି ଦ୍ରୌପଦୀଙ୍କି ଧରି ତେର ବର୍ଷ ପାଇଁ ରାଜ୍ୟ ଛାଡ଼ି ବଣରେ ପଶିଲେ । ପୁରୋହିତ ଧୌମ୍ୟ ସାଙ୍ଗରେ ଯାଇ ଥିଲେ । ଅନେକ ବ୍ରାହ୍ମଣ, ସାଧୁ

ସନ୍ନ୍ୟାସୀ ରାଜ୍ୟରୁ ଧର୍ମ ଛାଡ଼ିଗଲା ବୋଲି ତାଙ୍କ ସାଙ୍ଗେ ସାଙ୍ଗେ ବଣକୁ ଗଲେ ।

ବଣରେ ଏତେ ଲୋକଙ୍କୁ ଖାଇବା ପିଇବାକୁ ଦେବା ବଡ଼ କଷ୍ଟ । ଯୁଧିଷ୍ଠିର ସେଠୁ ସୂର୍ଯ୍ୟଙ୍କୁ ପୂଜା କଲେ । ସୂର୍ଯ୍ୟ ଦେବତା ଖୁସି ହୋଇ ତାଙ୍କୁ ଗୋଟିଏ ଥାଳି ଦେଇ କହିଲେ, "ଏ ଥାଳିଟି ରଖ । ବାର ବର୍ଷ ପର୍ଯ୍ୟନ୍ତ ସବୁ ଦିନ ଦ୍ରୌପଦୀ ନ ଖାଇବା ଯାଏଁ ସେ ଯାହା ବଢ଼ାଇବେ ଏ ଥାଳିରୁ କ୍ଷୀର, ପିଠା, ଖେଚଡ଼ି ସବୁ ବାହାରିବ । ସେ ଖାଇ ସାରିଲେ ସେ ଦିନ ଆଉ ବାହାରିବ ନାହିଁ ।"

---

# ବନ୍ଧୁ ସଙ୍ଗୋଳା

ପାଣ୍ଡବମାନେ ପ୍ରଥମେ ଯାଇ କାମ୍ୟକ ବନରେ ରହିଲେ । ଏଣେ ହସ୍ତିନାରେ କୌରବମାନେ ଖୁସିରେ ଥାନ୍ତି । ଥରେ ବିଦୁର ପାଣ୍ଡବଙ୍କ ପକ୍ଷରେ ରହି କ'ଣ ଭଲ କଥା କହିଲେ ବୋଲି ସେମାନେ ତାଙ୍କୁ ରାଜ୍ୟରୁ ତଡ଼ି ଦେଇଥିଲେ । ବିଦୁର କାମ୍ୟକ ବନକୁ ଯାଇ ପାଣ୍ଡବଙ୍କ ସାଙ୍ଗେ ଦେଖା କଲେ । ଆଉ ଥରେ ଦୁର୍ଯ୍ୟୋଧନ, କର୍ଣ୍ଣ ବିଚାର କରି ପାଣ୍ଡବମାନଙ୍କୁ ବଣରେ ମାରି ଦେବେ ବୋଲି ସୈନ୍ୟ ସାମନ୍ତ ଧରି ବାହାରିଥିଲେ । ବ୍ୟାସଦେବ ଏ କଥା ଜାଣି ବାଟରୁ ତାଙ୍କୁ ବାହୁଡ଼ାଇ ଆଣିଲେ ।

ପାଣ୍ଡବଙ୍କୁ ଦେଖିବା ପାଇଁ ଶ୍ରୀକୃଷ୍ଣ ଆଉ ଧୃଷ୍ଟଦ୍ୟୁମ୍ନ କାମ୍ୟକ ବନକୁ ଯାଇ ଥିଲେ । ଏମାନେ କିଛି ଦିନ ତାଙ୍କ ପାଖେ ରହିଲେ ।

କହିଲେ ଯେ, 'ଯୁଦ୍ଧରେ କୌରବମାନଙ୍କୁ ମାରି ପାଣ୍ଡବଙ୍କୁ ମୁଲକରେ ରଜା କରାଇବେ ।'

ବଣରେ ଥିଲାବେଳେ ନିତି ଅନେକ ମୁନି ଋଷି ମଧ୍ୟ ପାଣ୍ଡବଙ୍କ ପାଖକୁ ଯା'ନ୍ତି । ପାଣ୍ଡବମାନେ ଭଲ ଲୋକ । ସବୁବେଳେ ଧର୍ମ କଥାରେ ଦିନ କାଟୁଥାନ୍ତି । ରଜାଘର ସୁଖ ବଣରେ ନ ଥିଲେ ସୁଦ୍ଧା ସାଧୁ ସନ୍ଥଙ୍କ ସଙ୍ଗେ ସୁଖରେ ଦିନ କଟି ଯାଉ ଥାଏ ।

---

## ଅର୍ଜୁନ ମହାଦେବଙ୍କଠାରୁ ବର ପାଇଲେ

ଦିନେ ବ୍ୟାସଦେବ ପାଣ୍ଡବମାନଙ୍କୁ ଦେଖିବାକୁ ଯାଇଥିଲେ । ସେମାନେ ଧର୍ମରେ ରହି ଏତେ କଷ୍ଟ ସହୁଛନ୍ତି ଦେଖି, ତାଙ୍କୁ କଷ୍ଟ ଲାଗିଲା । ସେ ଆଶୀର୍ବାଦ କଲେ, "ଆଗକୁ ତୁମର ଜୟ ହେବ, କୌରବମାନଙ୍କର ଅମଙ୍ଗଳ ହେବ ।" ଏହା କହି ଯୁଧିଷ୍ଠିରଙ୍କୁ ଗୋଟିଏ ବିଦ୍ୟା ଶିଖାଇଲେ । ସେହି ବିଦ୍ୟାଟି ନାଁ 'ପ୍ରତିସ୍ମୃତି' ବିଦ୍ୟା । କହିଲେ, "ଏହି ବିଦ୍ୟାଟି ତୁମେ ଅର୍ଜୁନଙ୍କୁ ଶିଖାଇବ ଯେ, ସେ ଏଥିରେ ଶିବ, ଇନ୍ଦ୍ର, ବରୁଣ ପ୍ରଭୃତି ଦେବତାମାନଙ୍କୁ ତୁଷ୍ଟ କରି ଭଲ ଭଲ ଅସ୍ତ୍ର ଶସ୍ତ୍ର ପାଇପାରିବେ ।" ଏହା କହି ସେ ଚାଲିଗଲେ ।

ଅର୍ଜୁନ ଭାଇଙ୍କ ଠାରୁ ପ୍ରତିସ୍ମୃତି ବିଦ୍ୟା ଶିଖି ତପସ୍ୟା କରିବାକୁ ବଣକୁ ଗଲେ । ବାଟରେ ଇନ୍ଦ୍ରଙ୍କ ସଙ୍ଗେ ତାଙ୍କର ଦେଖା ହେଲା । ପରେ ସେ ଶିବଙ୍କୁ ପାଇବା ପାଇଁ ହିମାଳୟକୁ ଯାଇ ଘୋର ତପସ୍ୟା କଲେ । ସେ ଯେପରି ତପସ୍ୟା କଲେ, ଋଷିମାନେ ଭୟ କରିଗଲେ । ତାଙ୍କ ଦେହରୁ ତେଜ ବାହାରି ବଣପାକ ଆଲୁଅ କରିଦେଲା ।

ଶେଷକୁ ମହାଦେବ ସନ୍ତୁଷ୍ଟ ହୋଇ ଶବର ବେଶରେ ପାର୍ବତୀଙ୍କି ସାଙ୍ଗରେ ଧରି ଅର୍ଜୁନଙ୍କ ପାଖେ ପହଞ୍ଚିଲେ । ସେ ଅର୍ଜୁନଙ୍କ ମନ ବୁଝିବାକୁ ଯାଇଥିଲେ । ସେହିକ୍ଷ ବେଳକୁ ଗୋଟେ ବରାହ ଅର୍ଜୁନଙ୍କୁ ମାରିବାକୁ ଆସୁଥିଲା । ଅର୍ଜୁନ ତାକୁ ଶର ମାରିଲା ବେଳକୁ ଶବର ଧନୁ ଶର ଧରି ମାରିଲେ । ବରାହକୁ କିଏ ଆଗ ମାରିଲା ବୋଲି ଶବର ଆଉ ଅର୍ଜୁନଙ୍କ ଭିତରେ କଳି ଲାଗିଲା । କଳିରୁ ଦୁହେଁ ମରାମରି ହେଲେ । ଘୋର ଯୁଦ୍ଧ ହେଲା । ଅର୍ଜୁନଙ୍କର ସବୁ ବଳ କୌଶଳ ଗଲା,ସବୁ ଶର ସରିଗଲା । ଶେଷକୁ ସେ ଏକ ଶିବ ମୂର୍ତ୍ତି ତିଆରି କରି ତାକୁ ପୂଜା କଲେ । ଦେଖିଲେ, ସେ ଯିମିତି ଫୁଲମାଳ ଶିବ ମୂର୍ତ୍ତି ଉପରେ ପକାଇଦେଉଛନ୍ତି ସେ ମାଳ ଯାଇ ଶବର ବେକରେ ପଡ଼ିଗଲା । ସେ ଜାଣି ପାରିଲେ ଯେ, ଏ ନିଶ୍ଚୟ ମହାଦେବ । ତହୁଁ ତାଙ୍କ ଗୋଡ଼ ତଳେ ସାଷ୍ଟାଙ୍ଗ ହୋଇ ପଡ଼ିଗଲେ । ମହାଦେବ ନିଜ ରୂପ ଦେଖାଇ ତାଙ୍କୁ କୁଣ୍ଢାଇ ପକାଇଲେ ଏବଂ ପାଶୁପତ ବୋଲି ଏକ ଅସ୍ତ୍ର ଦେଲେ ।

ଏହା ପରେ ଇନ୍ଦ୍ର ଆସି ଅର୍ଜୁନଙ୍କୁ ସ୍ୱର୍ଗକୁ ନେଇ ଗଲେ । ସେଠାରେ ତାଙ୍କୁ ଭାରି ଆଦରରେ ରଖାଇଲେ । ଭଲ ଭଲ ଅସ୍ତ୍ର ଦେଇ ବିଦାକ୍ଷ ଦେଲେ ।

ଅର୍ଜୁନ ଆସିବାରେ ଡେରି ହେବାରୁ ଭାଇମାନେ ଦୁଃଖରେ ଥାନ୍ତି । ବେଳେ ବେଳେ ଋଷିମାନେ ଆସି ତାଙ୍କୁ ଅର୍ଜୁନଙ୍କ ଶୁଭ ଖବର ଦେଉଥାନ୍ତି । ଅର୍ଜୁନ ସ୍ୱର୍ଗରେ ଥିବାର ଲୋମଶ ମୁନିଙ୍କ ଠାରୁ ଖବର ପାଇ, ଯୁଧିଷ୍ଠିର ହେଲକା ଭାରତର ସବୁ ତୀର୍ଥ ବୁଲି ଆସିଲେ ।

ଏ ଭିତରେ ଥରେ ହନୁମାନ ସାଙ୍ଗେ ଭୀମଙ୍କର ଦେଖା ହୋଇ ଥିଲା । ହନୁମାନ ପବନ ପୁଅ, ତେଣୁ ସେ ଭୀମଙ୍କ ବଡ଼ ଭାଇ ପରି ।

ପାଣ୍ଡବମାନେ ବୁଲି ବୁଲି ଗନ୍ଧମାଦନ ପର୍ବତରେ ଥିଲା-ବେଳେ ଅର୍ଜୁନ ଇନ୍ଦ୍ରଙ୍କ ରଥରେ ବସି ଆସି ସେଠାରେ ପହଞ୍ଚିଲେ । ଭାଇମାନେ ଭାରି ଖୁସି ହେଲେ ।

---

## ଦୁର୍ଯ୍ୟୋଧନ ଓ ଜୟଦ୍ରଥ ଅପମାନ ପାଇଲେ

ଏଣେ ହସ୍ତିନାରେ କର୍ଣ୍ଣ, ଦୁର୍ଯ୍ୟୋଧନ ବସି ବିଚାର କଲେ, "ପାଣ୍ଡବମାନେ ତ ବନ ପାଞ୍ଚିକୁ ଗଲେ, ବଣରେ ଚେରମୂଳ ଖୋଳି ବୁଲୁଥିବେ । ଏଣେ ଚାଲ ଯିବା; ଦେଖିବା ତାଙ୍କ ମଜାଟା ।"

ସେତେବେଳକୁ ପାଣ୍ଡବମାନେ ଦ୍ୱୈତ ବନର ଏକ ପୋଖରୀ କୂଳରେ ଥାନ୍ତି । ଦୁର୍ଯ୍ୟୋଧନ ଭାଇ ବନ୍ଧୁ ପିଲା କୁଟୁମ୍ବ ଧରି, ହାତୀ, ଘୋଡ଼ା, ସୈନ୍ୟ ସାମନ୍ତ ସଜ କରି ବାହାରିଲେ । ବାପାଙ୍କୁ କହିଲେ, "ମୁଁ ଯାଉଛି ଆମ ଗାଈ ଦେଖିବାକୁ ।"

ଏମାନେ ଯାଇ ପାଣ୍ଡବମାନେ ଥିବା ପୋଖରୀ ଆର ପାଖ ହୁଡ଼ାରେ ପହଞ୍ଚିଲେ । ସେତେବେଳକୁ ସ୍ୱର୍ଗରୁ ଗନ୍ଧର୍ବରାଜ ଚିତ୍ରସେନ ପିଲା କୁଟୁମ୍ବ ଧରି ସେ ପୋଖରୀରେ ଗାଧୋଇବାକୁ ଆସିଛନ୍ତି । ଗନ୍ଧର୍ବସେନାମାନେ ଦୁର୍ଯ୍ୟୋଧନଙ୍କ ଲୋକଙ୍କୁ ପୋଖରୀରେ ପଶିବାକୁ ମନା କଲେ । ସେମାନେ ମନା ମାନିଲେ ନାହିଁ, ଅଧିକରେ କଳି ଲଗାଇଲେ । ଗୁହୁଁ ଗୁହୁଁ ଦୁଇ ଦଳ ଭିତରେ କଳି ଲାଗିଲା । ଦୁର୍ଯ୍ୟୋଧନଙ୍କର ଅନେକ ସୈନ୍ୟ ମଲେ, କର୍ଣ୍ଣ ହାରିକା ପ୍ରାଣ ଭୟରେ ପଳେଇଲେ । ଚିତ୍ରସେନ ଦୁର୍ଯ୍ୟୋଧନ ପ୍ରଭୃତିଙ୍କି ବାନ୍ଧି ନେଇଗଲେ ।

ଏ କଥା ପାଣ୍ଡବଙ୍କ କାନକୁ ଗଲା । ଭୀମ ମନେ ମନେ ମହା ଆନନ୍ଦ । ମାତ୍ର ଯୁଧିଷ୍ଠିର ଦୁଃଖ କରି ଅର୍ଜୁନଙ୍କୁ ପଠାଇଲେ, "ଯାଅ ଅର୍ଜୁନ, ଦୁର୍ଯ୍ୟୋଧନଙ୍କୁ ରକ୍ଷା କର ।"

ଅର୍ଜୁନ ଗଲେ, ଗନ୍ଧର୍ବଙ୍କ ସାଙ୍ଗେ ଯୁଦ୍ଧ କଲେ । ସେ ସ୍ୱର୍ଗରେ ଥିଲାବେଳେ ଚିତ୍ରସେନଙ୍କ ସାଙ୍ଗେ ତାଙ୍କର ଭଲ ଚିହ୍ନା ହୋଇଥିଲା । ସେ ତାଙ୍କୁ କହି ଦେବାରୁ ଦୁର୍ଯ୍ୟୋଧନ ଡେରିକାଙ୍କୁ ଖଲାସ କରି ଦେଲେ । ଦୁର୍ଯ୍ୟୋଧନ ଏଥର ମୁହଁଟିଏ କରି ଗୋରବଙ୍କ ପରି ଘରକୁ ଫେରିଗଲେ ।

ସିନ୍ଧୁ ଦେଶର ରାଜା ଜୟଦ୍ରଥ ଦୁର୍ଯ୍ୟୋଧନଙ୍କ ଭଣୋଇ । ସେ ଥରେ କାମ୍ୟକ ବନ ବାଟେ ଯାଉ ଯାଉ ଦ୍ରୌପଦୀଙ୍କି ଏକୁଟିଆ ଦେଖିଲେ । ପାଣ୍ଡବଙ୍କୁ ଅପମାନ ଦେବା ପାଇଁ ଦ୍ରୌପଦୀଙ୍କି ରଥରେ ବସାଇ ନେଇଗଲେ । ପାଣ୍ଡବମାନେ ଏ କଥା ଜାଣି ପଛରେ ଗୋଡ଼ାଇ ତାକୁ ଧରିଲେ । ଭୀମ ତାଙ୍କୁ ଚୁଟି ଧୋସାରି ନିର୍ମମ ବିଧା, ଗୋଇଠା, ଚାପୁଡ଼ା ମାରିଲେ । ଶେଷକୁ ଘୋସାରି ଆଣି ଯୁଧିଷ୍ଠିରଙ୍କ ପାଖେ ପକାଇଲେ । ଯୁଧିଷ୍ଠିର ଦୟା କରି ତାଙ୍କୁ ଛାଡ଼ି ଦେଲେ । ଶଳା ଭଣୋଇ ଦୁହେଁ ଏହିପରି ଅପମାନ ପାଇ କାନ ମୁଣ୍ଡ ଆଉଁସି ଗଲେ ।

---

## କର୍ଣ୍ଣଙ୍କର ବଳ କମି ଗଲା

ଜନ୍ମବେଳୁ କର୍ଣ୍ଣଙ୍କ କାନରେ ଯୋଡ଼ିଏ କୁଣ୍ଡଳ ଓ ଦେହରେ ଗୋଟିଏ କବଚ ଥାଏ । ସେ କୁଣ୍ଡଳର ଗୁଣ ହେଉଛି ଯେ, ତାହା ଥିଲେ କର୍ଣ୍ଣଙ୍କୁ କେହି ମାରି ପାରିବେ ନାହିଁ, ଆଉ କବଚର ଗୁଣ ହେଉଛି, ସେଥିରେ ଶରମାନ ଭେଦିବ ନାହିଁ ।



କର୍ଣ୍ଣଙ୍କ କବଚ କୁଣ୍ଡଳଦାନ